ମଣିଷର ମନ, ତା'ର ଅନ୍ତର୍ଦ୍ୱନ୍ଦ୍ୱ ଏବଂ ପରିବାରରେ, ଏ ସମାଜରେ ବହୁ ଘାତ ପ୍ରତିଘାତ ମଧ୍ୟରେ ସୁଖରେ, ସ୍ୱଚ୍ଛରେ ବଂଚି ରହିବାର ସକ୍ଷମତା ଅର୍ଥାତ୍ କିଛି ଆତ୍ମବଳ ଲେଖିକାଙ୍କ ଗଳ୍ପମାନଙ୍କରେ ଦର୍ଶାଯାଇଛି।

ବିଭିନ୍ନ ସମୟରେ ପତ୍ରପତ୍ରିକାରେ ପ୍ରକାଶିତ ଏହି ଗଳ୍ପଗୁଡ଼ିକ ପାଠକୀୟ ସ୍ୱୀକୃତି ଲାଭ କରିଛି। ଲେଖାଗୁଡ଼ିକର ଉପସ୍ଥାପନା ଶୈଳୀ ସ୍ୱତନ୍ତ୍ର ଓ ସାବଲୀଳ। ଶବ୍ଦଟିଏ ଅଧିକ ଦେଇ କିମ୍ବା ସେସବୁ ମଧ୍ୟରୁ କିଛି ବାଦ୍ କରି ତାଙ୍କ ଗଳ୍ପଟି ସୁନ୍ଦର, ସ୍ୱୟଂ ସଂପୂର୍ଣ୍ଣ କରାଯାଇ ପାରେ ନାହିଁ।

ଶ୍ରୀମତୀ ଶକୁନ୍ତଳା ପଣ୍ଡାଙ୍କର ଅନ୍ୟାନ୍ୟ ଗଳ୍ପ ଉପନ୍ୟାସ ପୁସ୍ତକ ଭଳି ଏ ସଂକଳନଟି ମଧ୍ୟ ଉନ୍ନତ ରୁଚିର।

ଜେରୁଜେଲମ୍‌ର ସନ୍ଥ
ଶକୁନ୍ତଳା ପଣ୍ଡା
ପ୍ରକାଶକ :
ସୁଚରିତା ପବ୍ଲିକେଶନ୍ସ
୪୩୧, ଶହୀଦ ନଗର, ଭୁବନେଶ୍ୱର-୭
ପ୍ରଚ୍ଛଦ :
ଫଟୋଚିତ୍ର
ସଂଜୟ କୁମାର ପଣ୍ଡା
ପ୍ରଥମ ପ୍ରକାଶନ :
୧୯୯୬
ମୁଦ୍ରଣ :
ଅପ୍ଟିମା ପ୍ରିଣ୍ଟ୍ସ, କଟକ
ମୂଲ୍ୟ :
ପଚାଶ ଟଙ୍କା ମାତ୍ର

**JERUJELEM RA SANTHA**
**Sakuntala Panda**

Published by
**SUCHARITA PUBLICATIONS,**
Bhubaneswar

First Edition 1996

Cover Photo
Sanjay Kumar Panda

Printed at
Optima Prints, Cuttack

Price :
Rupees Fifty Only

# ସୂଚୀପତ୍ର

# ଅନିଶ୍‌ର ଉକ୍ତି

ଦୁଇ ହାତରେ ଆଖି ଘଷି ବିଛଣାରେ ଉଠିବସିଲା ଅନିଶ୍। କେହି କୋଉଠି ଦେଖାଯାଉନାହାନ୍ତି। ମା'ର ପାଦଶବ୍ଦ କୋଉଠି ସ୍ଥିର ହୋଇ ଯାଇଛି। ଏଇ ଏବେ ଆସିଯାଇପାରନ୍ତି। କିଚେନ୍‌ରୁ ତ ଶବ୍ଦ ଆସୁନି।

ବାପା ? ଅଫିସ୍ ଚାଲିଗଲେଣି ?

ସେ ଧୀରେ ବିଛଣାରୁ ଓହ୍ଲେଇ ଗାଧୁଆଘର କବାଟ ଠେଲି ଭିତରେ ପଶିଲା। ଜୋର୍ ସୁସୁ।

ଅଧା ଟେକା ପ୍ୟାଣ୍ଟ୍ ଗୋଟାଏ ହାତରେ ସଜାଡ଼ି ନେଇ ବଡ଼ କାଚ୍ ଝରକା ପାଖରେ ଆସି ବାହାରକୁ ଚାହିଁଲା ସେ।

'ଆଭିନ୍ୟୁ ଲୁଇସ୍'ରେ ଟ୍ରାଫିକ୍ ଧାଡ଼ି ଲାଗିଲାଣି। ଟ୍ରାମ୍, ବସ୍, କାର୍‌ମାନେ କାଚ୍ ସେପାଖରେ ନିଃଶବ୍ଦରେ ଚାଲିଛନ୍ତି। ମନେ ହେଉଛନ୍ତି ସତେକି ଅନିଶ୍‌ର ଖେଳନା ଗାଡ଼ି।

ମେଘାଚ୍ଛନ୍ନ ଆକାଶ, ବର୍ଷିବ ବର୍ଷିବ ହେଉଛି। ମଝି ଫୁଟପାଥ୍‌ର ସେଇ ଥୁଣ୍ଟା ଗଛରେ ଏବେ ପତ୍ର ଗଜୁଳି। ପତ୍ରମାନେ ରଙ୍ଗ ବଦଳେଇଛନ୍ତି। ପକ୍ଷୀଟିଏ ବସି ଗୀତ ଗାଉଛି। ସେ ବାର୍ତ୍ତାନେଇ ଆସିଛି, ଶୀତ ଶେଷ ହେଲା। ବସନ୍ତ ଆସିଛି।

ଅନିଶ୍ ଚାହିଁଛି। କି ସୁନ୍ଦର ଏ ବାର୍ଡ୍! ଗଛର ପତ୍ରଡ଼ାଳରେ ବସି ଦୋଳି ଖେଳୁଛି। ଖୁସି ମନରେ ଗୀତ ଗାଉଛି।

ଅନିଶ୍ ହଠାତ୍ ସେଇଠି ଠିଆହେଇ ପାଟିକରି ଡ଼ାକିଲା, ''ଜେଜେମା'...

ଜେଜେମା, ଭିଉ ଦେଖିବ ଆସ।''

କେହି ଉତ୍ତର ଦେଲେ ନାହିଁ। ରାସ୍ତାରେ ଯାଉଥିବା ଲୋକମାନେ ବି ତାକୁ ଚାହିଁଲେ ନାହିଁ।

ଅନିଶ୍ କାଛକୁ ଆଉଜି ଏକୁଟିଆ ପକ୍ଷୀଟିକୁ ଚାହିଁ ରହିଲା।

—ମୋ ଧନ... ମୋ ସୁନା, କେତେ ବୁଦ୍ଧି ତା'ର! ଦେଖିରେ ମିତୁ, ଆମ ଟିକ୍‌ଲି ଭିଉ ଦେଖଉଚି। ଆକାଶରେ ମେଘ। ଫୁଟ୍‌ପାଥ୍‌ର ସୁନ୍ଦର ଗଛଟିରେ ଗୀତ ଗାଉଥିବା ପକ୍ଷୀ। ତୁ ଧନମଣିଟା ଆର୍ଟିଷ୍ଟ ହେବୁ କିରେ? ଚାଲ୍— ତୋ ପେଣ୍ଟିଂବୁକ୍ ଆଣ୍। ବାପାରେ, ଆକାଶ, ରାସ୍ତା, ଗଛ, ଚଢ଼େଇ ତୁ ଆଙ୍କି ପାରିବୁ?

ଜେଜେମା' କାଖରୁ ଓହ୍ଲେଇ ଦୌଡ଼ିଗଲା ଅନିଶ୍।

''ଯାହା କହିବ ଆଙ୍କି ଦେବି। ପାହାଡ଼, ପାଇନ୍ ଟ୍ରି, ରିଭର୍, ସ୍କାଏ, ଫ୍ଲାଇଙ୍ଗ୍ ବାର୍ଡ୍‌ସ୍, ଆସ— ତୁମେ ବସିବ ମୋ ପାଖରେ। ଜଲ୍‌ଦି ଆସ। କ'ଣ ଏତେ ଦେଖୁଛ ସେଇ ବାର୍ଡ୍‌କୁ?''

ଅନିଶ୍ ଆଉଥରେ କାହାକୁ ଖୋଜିହେଲା ଘର ସାରା। ନା— କେହି ନାହାନ୍ତି ଏଠି। ମଝି ଫୁଟ୍‌ପାଥ୍‌ରେ ଧାଡ଼ି ଧାଡ଼ି ଗଛ ଏବଂ ଝରକା ସାମନାରେ ସେଇ ଗଛଡ଼ାଳରେ ପକ୍ଷୀଟି ତଥାପି ଏକା ଏକା ବସି ଜୁଳୁ ଜୁଳୁ କରି ଚାହିଁ ରହିଛି। ତା'ର କେହି ସାଙ୍ଗ ନାହିଁ?

ବେଳେ ବେଳେ କଥା କହିବା ଭଳି ଗୀତ ପଦେ ଗାଇଦଉଚି— ଜେଜେମା', ଜାଣିଛ ସେ ଫ୍ରେଞ୍ଚ୍ ଭାଷାରେ କଥା କହୁଛି। ସେ କହୁଛି, 'ଅନିଶ୍ ଆସ। ଆମେ ସାଙ୍ଗ ହେଇ ଖେଳିବା।'

କିଏ ତାକୁ କାଖେଇ ନେଇ ମୁହଁ ଲୁଚେଇ ଗେଲ୍ହା କରୁଚି?

—''ଛାଡ଼ ଜେଜେମା', ଆସ ଭିଉ ଦେଖିବା। ଓଃ ମା', ତୁମେ!''

ମା' ତାକୁ କିଛି ନ କହି କୋଳରୁ ଓହ୍ଲେଇଦେଇ ବିଛଣା ସଜାଡ଼ି ବସିଲେ।

ପିଲା କେତୋଟି ରାସ୍ତାରେ ଚାଲିଛନ୍ତି ବହି ବ୍ୟାଗ୍ ଧରି। ଉଇଣ୍ଟର୍‌ରେ ଖୁବ୍ ମଜା। ଏଇଠି ବସି ବସି ସେ 'ସ୍ନୋଫଲ୍' ଦେଖେ। ସ୍ନୋ ଗଦା ଭିତରେ ଖେଳି ଖେଳି ସ୍କୁଲ ଯାଉଥିବା ସାନ ସାନ ପିଲାମାନଙ୍କୁ ଦେଖି କହେ—

''ମା', ମୁଁ ସ୍କୁଲ୍ ଯିବି।''

''ତୋର ଏବେ ଯିବାର ବୟସ ହେଇନି। ସ୍କୁଲ୍‌ରେ ନେବେ ନାହିଁ। ମନା କରିବେ।'' ବାପା ଉତ୍ତର ଦିଅନ୍ତି।

''ପିଲାଟା ଯାଉ, ସବୁବେଳେ ଘରେ ଏକା ବସି ଖେଳୁଛି।''

''ସ୍କୁଲ୍ ଗଲେ କ'ଣ କରିବ? ସେଇ ଖେଳିବ। ଜାଣିଛ ତ ଫାଇଭ୍ ଇୟର୍ ନ ହେଲେ ସେମାନେ ଏଠି ମନା କରିଦେବେ।''

ମା' ବାପାଙ୍କ କଥା ଶୁଣି ରାସ୍ତାରେ ଯାଉଥିବା ସାନ ସାନ ପୁଅ ଝିଅଙ୍କୁ ଆଉଥରେ ଚାହିଁଲା ଅନିଶ୍। ସେମାନେ ଯାଇ ସାରିଲେଣି।

ଆରେ ବାବା, ଟାଇଗର୍ ବୁଲୁଚି ମଝି ଫୁଟ୍‌ପାଥ୍‌ରେ। ତା'ର କାହାକୁ ଡ଼ର ନାହିଁ। କୁକୁରବାଲାଟା ନିର୍ଭୟରେ ସିଗାରେଟ୍ ଫୁଙ୍କି ଚାଲିଛି। ଅନ୍ୟ ହାତରେ ଟାଇଗର୍‌ର ଚେନ୍ ଧରିଛି। ସେ ତାକୁ ଏମିତି ବଡ଼ ବଡ଼ ଆଖିରେ ଚାହିଁଛି କାହିଁକି? ଟିକିଏ ପଛକୁ ଘୁଞ୍ଚି ଆସିଲା ଅନିଶ୍।

''ଅନିଶ୍, ଏତେ ଜୋର୍‌ରେ ଦୁମ୍ ଦୁମ୍ କରି ଦୌଡ଼ୁଛୁ କାହିଁକି? ଫ୍ଲୋର୍‌ଟା କମ୍ପୁଛି। ଜାଣିନୁ ତଳେ କୁକୁରବାଲା ଅଛି।''

''ଏତେ ମନାକଲି। ସାଇକେଲ୍ ଧରି ବୁଲୁଛୁ। ଓଃ ଏ ପିଲାର କେବେ ବୁଦ୍ଧି ହେବ?'' ବାପା ଖୁବ୍ ବିରକ୍ତ।

''ତୁମେ ତେବେ କ'ଣ କହୁଛ? ପିଲାଟା ମନ ଖୁସିରେ ଏ ଘରେ ଖେଳିପାରିବନି?'' ମା' ଧୀରେ ପଚାରିଲେ।

ଅନିଶ୍ ବଲ୍‌ଟା ଧରିଥିଲା। ଆସ୍ତେ ରଖିଦେଲା ତଳେ।

ଠିକ୍ ସେତିକିବେଳେ କିଏ ତାକୁ କୋଳକୁ ଟେକି ନେଲା।

''ଆ, ଟିକ୍‌ଲି, ମୁଁ ତତେ କାଖ କରିବି। ଚାଲ୍ ଯିବା ତୋ ଖେଳ ଘରକୁ, ଲେଜିପୁସି, ବ୍ରାଉନି ଭୁ, ଗ୍ରିଡ଼ି ରାବିଟ୍, ମାମା ରାବିଟ୍, ବେବି ରାବିଟ୍... ଆଉ କିଏରେ ବାପା? ସେମାନେ ତୋତେ ଅପେକ୍ଷା କରିଛନ୍ତି।''

–ଚାଲ ଜେଜେମା', ବେଶ୍ ମଜାହବ, ଆମେ ଷ୍ଟୋରି କରିବା। ଜଙ୍ଗଲର ରାଜା ଲାୟନ୍ ମିଟିଂ ଡ଼ାକିଛି, ପ୍ୟାରଟ୍ ଉଡ଼ି ଉଡ଼ି ଯିବ। ସବୁ ଆନିମାଲ୍‌ଙ୍କୁ ଇନ୍‌ଫର୍ମ କରିବ।

ଠିକ୍ ଏତିକିବେଳେ ଗ୍ରିଡ଼ି ରାବିଟ୍‌ର ଚକ ଗଡ଼ିଗଲା କିମ୍ବା ଚୁପ୍‌ଚାପ୍ କିଏ ତାକୁ ଠେଲିଦେଲା।

"ନୋ.. ନୋ.. ଗ୍ରିଡ଼ି, ତୁ ପରା ମିଟିଂ ଯିବୁ।" ଜେଜେମା' ପାଟିକରୁଥାଆନ୍ତି। ଗ୍ରିଡ଼ି ରାବିଟ୍ ଯାଇ କୋଲ୍‌ଡ୍ ଡ୍ରିଙ୍କସ କ୍ରେଟ୍ ପାଖରେ ପହଞ୍ଚି ଯାଇଛି। ହସି ହସି ଗଡ଼ିଯାଉଛି ଅନିଶ୍।

"ଦେଖ୍ ଟିକିଲି, ଜେଜେମା' ଏବେ 'ସେଲ୍'ରେ ମିଳୁଛି।" ଜେଜେମା' ହାତରେ ଧଳା କାଗଜର ଷ୍ଟିକର୍ ମରା ହୋଇଛି। ଅନିଶ୍ କେତେ ହସିବ? ହସର ଶେଷ ନାହିଁ।

କବାଟ ପାଖରେ କିଏ? ବାପା ଠିଆ ହୋଇଛନ୍ତି।

"ଖେଳୁଛୁ? ଥା' ଗେହ୍ଲାହବୁ।"

"ତୁମେ ଏଠୁ ଯାଅ, ବାପା।"

"ଚାଲ୍ ମୋ ସାଙ୍ଗେ ଡ଼ିନାର୍ ଖାଇବୁ। ମୋ ପାଖରେ ବସି ପାଠ ପଢ଼ିବୁ।"

"ମୋତେ ଜେଜେମା' ଖୁଆଇ ଦେବେ।"

"କିରେ ତୁ ନିଜେ ଖାଉଥିଲୁ। ଶିଖିବୁ କିମିତି?"

"ନା... ତୁମେ ଯାଅ ଏଠୁ।" ତାଙ୍କୁ ଠେଲି ଅନିଶ୍ ଚିତ୍କାର କଲା।

ଜେଜେମା' ଥିର୍ ଉଠି ପଳେଇଛନ୍ତି ଖେଳଘରୁ। ଅନିଶ୍ ଏକା ଏକା ପୋଲାର୍ ବିଅର୍‌କୁ ଗେହ୍ଲା କରୁଛି। କବାଟ ପାଖକୁ ଚାହିଁ ଅପେକ୍ଷା କରିଛି କିଏ କାଳେ ଆସିବ। ଜେଜେମା' ବି ଆସିଯାଇ ପାରନ୍ତି।

ସେପାଖରୁ ବାପାଙ୍କ ସ୍ୱର ଶୁଣାଯାଉଛି।

"ମା', ତୁମେ ତାକୁ ଗେହ୍ଲାକରି ସ୍ପଏଲ୍ କରିଦବ।"

"ତୁ ପିଲାଦିନେ ଗେହ୍ଲା ହେଇ ନଥିଲୁ? ସ୍ପଏଲ୍ ହୋଇଗଲୁ?"

"ତୁମେ ଆସିବା ପୂର୍ବରୁ ସେ କଥା ମାନୁଥିଲା, ଏବେ ଜିଦ୍ କରି ତୁମକୁ ବେଶୀ ହଇରାଣ କରୁଛି।"

ଅନିଶ୍ ଖେଳଘରୁ ଉଠିଗଲା। ହାତ ଧୋଇ ଖାଇବା ଟେବୁଲ ପାଖରେ ବସି କହିଲା, "ମା', ମୋ ଡ଼ିନାର୍ ଦିଅ, ମୁଁ ନିଜେ ଖାଇବି।"

ପାଖ ଚଉକିରେ ବାପା, ଜେଜେମା' ଖାଇବା ପାଇଁ ଅପେକ୍ଷା କରିଥାଆନ୍ତି। ସମସ୍ତେ ଚୁପ୍‌ଚାପ୍ ତାକୁ ଦେଖୁଥାଆନ୍ତି।

ଅନିଶ୍ ନିଜେ ନିଜେ ଖାଇବାକୁ ଚେଷ୍ଟା କରୁଥାଏ। କଣେଇ କଣେଇ ବାପାଙ୍କୁ ଚାହୁଁଥାଏ।

ବାପା ଏବେ ତାକୁ କିଛି କହୁନାହାନ୍ତି। ଖୁବ୍ ରାଗିଛନ୍ତି ତା' ଉପରେ। ଅନ୍ୟଦିନ ହୋଇଥିଲେ କହିଥାଆନ୍ତେ, "ବାଃ ଦେଖ ମିତୁ, ଅନିଶ୍ କି ସୁନ୍ଦର ଖାଉଚି ?"

ଏବେ ଚୁପ୍‌ଚାପ୍ ସୁପ୍ ପ୍ଲେଟ୍ ତା' ପାଖକୁ ଘୁଞ୍ଚେଇ ଦେଇ ମା' ସଙ୍ଗେ କ'ଣ ଅଫିସ୍ କଥା ଗପିବାରେ ବ୍ୟସ୍ତ। ଜେଜେମା' ବି ଥରଟିଏ ତା' ଆଡ଼େ ଚାହୁଁ ନାହାନ୍ତି।

– ଜେଜେମା', ମୋତେ ଖୁଆଇଦିଅ।

– ତୁ ନିଜେ ଖା। ମା' କହିଲେ।

– ନା।

ଚିତ୍କାର କଲା ଅନିଶ୍।

ବାପା ତାକୁ ଗମ୍ଭୀର ହୋଇ ଚାହିଁଲେ। କିଛି ବି କହିଲେ ନାହିଁ।

ଜେଜେମା'ଙ୍କ ଖାଇବା ଶେଷ ହୋଇଥିଲା। ହାତ ଧୋଇ ଅନିଶ୍‌କୁ ସେ ଖୁଆଇଦେବାକୁ ଆରମ୍ଭ କଲେ।

ବାପାଙ୍କୁ ଅଳ୍ପ ଚାହିଁ ଦେଉଥାଏ ଅନିଶ୍ ଚୁପ୍‌ଚାପ୍ ବସି ଖାଇବାବେଳେ।

"ଆଚ୍ଛା ଜେଜେମା', ତୁମ ପୁଅକୁ ତୁମେ ବାଡ଼ଉନ ?"

"କାହିଁକିରେ ମୋ ପୁଅ ତ ଦୁଷ୍ଟାମୀ କରୁନି, କଥା ମାନୁଛି।"

"ସେ କାହିଁକି ମୋତେ ଗେହ୍ଲା କରୁନି। ତୁମେ ତାକୁ ଯାଅ ବାଡ଼େଇବ।"

"ହେଃ, ବାପାଙ୍କୁ ଏମିତି କହନ୍ତି ? ତୁ . ଅନିଶ୍, ଏବେ ବାପାଙ୍କ ପାଖକୁ ଯାଆ।"

"ଓଃ କେତେଥର କହିଛି, ତୁମେ ମୋତେ ଅନିଶ୍ ଡାକିବନି। ମୁଁ ତ ତୁମର ଟିକ୍‌ଲି। ବାପା ଡ଼ାକିବେ– ଅନିଶ୍, ମା' କହିବେ ବେବି, ବୁଝିଲ ତ।"

"ବୁଝିଗଲି ଟିକ୍‌ଲି, ଏବେ ତୁ ବାପାଙ୍କ ପାଖକୁ ଯା। ଟିକିଏ ଗେହ୍ଲା ହୋଇ ଆସିବୁ।"

ଜେଜେମା' ଗ୍ଲୋବ୍‌ଲାଇଟ୍ ଅନ୍ କରି ବହି ଖଣ୍ଡିକ ପଢ଼ିବାରେ ମନଦେଲେ।

ଅନିଶ୍ ପାଦ ଚିପି ଚିପି ବାପା ମା'ଙ୍କ କୋଠରୀ ଆଡ଼େ ଚାଲିଲା।

– ବାପା, ବାପା। ଶାନ୍ତ ଭାବରେ ଡ଼ାକିଲା ଅନିଶ୍।

– ହଁ।

ଖବର କାଗଜରୁ ମୁହଁ ନ ଉଠେଇ ବାପା ଉତ୍ତରଦେଲେ।

"ଚାଲ ବାପା, ୱାର୍ଲଡ୍ ଆଟ୍‌ଲାସ୍ ଦେଖିବା। ମୁଁ ତୁମକୁ କଣ୍ଟ୍ରି ସବୁ ଦେଖେଇଦେବି। ହେଇ ଦେଖ, ଏ ବେଲ୍‌ଜିଅମ୍। ବ୍ରସେଲ୍‌ସରୁ ଯିବା ସୁଇଜରଲ୍ୟାଣ୍ଡ – ଜେନେଭା। ଫ୍ରାନ୍ସର କଣ୍ଟ୍ରିରୋଡ୍ ଖୁବ୍ ସୁନ୍ଦର ନା ବାପା – ବାପା..."

– ହଁ।

– ଆଉ କ'ଣ ଦେଖିବା ଜାଣିଛ। ଚାହୁଁନ ଯାଡ଼େ। ସିନିକ୍ ଭିଉ, ଲେକ୍, ମଣ୍ଟାନିଆ (ମାଉଣ୍ଟେନ୍), ଲେଗ୍‌ଲିସ୍ (ଚର୍ଚ୍ଚ), ସିଟାଡ଼େଲ୍ (ଦୁର୍ଗ)।

– ବେବି, ଯା ଜେଜେମା'ଙ୍କ ପାଖରୁ ଗପ ଶୁଣିବୁ।

ମା' ତାକୁ ଆର ଘରକୁ ଯିବାକୁ କହୁଛନ୍ତି।

– ନା, ବାପାଙ୍କ ପାଖରେ ବସିବି।

ବାପା ସତରେ ରାଗିଛନ୍ତି? କିଛି କହୁ ନାହାନ୍ତି ତାକୁ। ଖାଲି ହୁଁ ହାଁ ଉତ୍ତର। ଖବରକାଗଜ ପଢ଼ା ସରିଲାଣି। ଏବେ ଟି.ଭି. ଦେଖୁଛନ୍ତି ସେ।

ଅନିଶ୍ ବାପାଙ୍କ କୋଳରେ ବସିଲା, କାନ୍ଧରେ ଚଢ଼ିଲା। ଗେହ୍ଲା କରିବେନି? ନିଶ୍ଚୟ, ଜବରଦସ୍ତ ଗେହ୍ଲା ହେବି।

– ହେଃ, କ'ଣ ହଉଚି? ଗଲୁ ଏଠୁ। ନିଉଜ୍ ହେଡ୍ ଲାଇନ୍ ବି ଦେଖେଇ ଦଉନି। ବାପା ତାକୁ ଠେଲିଦେଲେ ମା' ପାଖକୁ।

ଅନିଶ୍ ଏବେ ସତକୁ ସତ କାନ୍ଦିବ କାନ୍ଦିବ ହଉଚି।

ମା' କହିଲେ, "ଆ ବେବି, ମୋ କୋଳରେ ଶୋଇବୁ, ମୁଁ ଗୀତ ଗାଇବି।"

– ଜେଜେମା'... । ଚିତ୍କାର କରି କାନ୍ଦି ପକାଇଲା ଅନିଶ୍।

– କ'ଣ ହେଲା? କାନ୍ଦୁଚୁ କାହିଁକି? ଜେଜେମା' ତାକୁ କାଖକରି ନେଇ ଆସିଲେ।

– ଚାଲ, ଏ ଗ୍ଲୋବ୍‌ରେ ତୁମକୁ କେତେ କଣ୍ଟ୍ରି ଦେଖେଇ ଦେବି। କହିଲ ଇଣ୍ଡିଆ କାହିଁ?

– ମୁଁ ତ ଜାଣିପାରୁନି। ତୁ କହିଦେ।

– ଇଂଲିଶ୍ ପଢ଼ିପାରୁନ? ହେଇ ଦେଖ ଇଣ୍ଡିଆ – ଓଡ଼ିଶା – ଭୁବନେଶ୍ୱର। ଦେଖିଲ ତ। ଅନିଶ୍ କାନ୍ଦୁଥିବା କଥା ଭୁଲିଗଲାଣି।

ଏବେ ରେଜେଇ ଭିତରେ ଘୁଞ୍ଚିଆସିଲା ଜେଜେମା'ଙ୍କ ପାଖକୁ।

—ସେଇ ଷ୍ଟୋରିଟା କୁହ ଶୁଣିବି— ମୁଁ ମିଙ୍ଗିମିଙ୍ଗିଙ୍କା ମାଣିକି ଭଙ୍ଗା, ମୋ ଶିଙ୍ଘ ଦିଇଟା ସାର୍ପ୍।

ଜେଜେମା' କହିଲେ, ''ଏକ ଶିଙ୍ଘରେ ମଣିଷ ମାରେ। ଦୁଇ ଶିଙ୍ଘରେ ପର୍ବତ ଡାଡ଼େ...''

ଅନିଶ୍ ଆଖିରେ ନିଦ ଭର୍ତ୍ତି। ଆଉ ଗପ ଶୁଣି ନ ପାରି ସେ ଶୋଇଗଲା।

ସେଦିନ ବାପା ଅଫିସ୍‌ରୁ ଆସି କୋର୍ଟଟା ଟାଙ୍ଗିଦେଇ ଜୋତା ଖୋଲୁଥିଲେ।

ଘନ ଘନ କଲିଂଗ୍ ବେଲ୍। ମା' କହିଲେ, ''କିଏ ଆସିଲା ଏବେ ?''

ଅନିଶ୍ ତା'ର 'ଟୋ' ଗାଡ଼ିରେ ସାନ ସାନ କାର୍‌ମାନଙ୍କୁ ଲଦୁଥାଏ ବଡ଼ କାଚ ଟିପୟ ଉପରେ। ତା' ହାତ ସ୍ଥିର ହୋଇଗଲା।

କିଏ ଡ଼ାକୁଚି ? କୁକୁରବାଲା ?

ମେଜିକ୍ ଆଇରେ ଚାହିଁଦେଇ ବାପା କବାଟ ଖୋଲିଲେ।

ଗୁଡ୍ ଇଭିନିଂଗ...

ଯା'ପରେ ବାପାଙ୍କ ଅଭିବାଦନର ଉତ୍ତର ସେ ପାଖରୁ ଠିକ୍ ଶୁଣାଗଲା ନାହିଁ।

ସତକୁ ସତ କୁକୁରବାଲା ! ଯେ ତ ସେଇ। ସେଇ ବଡ଼ ବଡ଼ ଗୋଲ୍ ଗୋଲ୍ ଆଖି। ସତେକି ନିଆଁ ଜଳୁଛି ସେ ଆଖିରେ।

ୟୁ ନୋ, ୟିଓର ଚାଇଲ୍ଡ୍...

ଆଉ ଶୁଣିପାରିଲା ନାହିଁ ଅନିଶ୍। ଏବେ ସେ ଖୁବ୍ ମନଦେଇ ତା' ରାସ୍ତା ସେଟ୍ ସଜେଇ ଖେଳୁଛି। ଗଛ ସବୁ ପୋତିବାରେ ଲାଗିଲା ସେ।

ମା', ମୋ 'ଆତସିଓଁ' କାହିଁ ? ଗାଡ଼ିଟା ଯାଉ ଯାଉ ଖରାପ୍ ହେଇଗଲା ଅଟୋରୁଟ୍‌ରେ।

ମା' ଖୋଜି ଖୋଜି ରାସ୍ତା ସେଟ୍ ମଧ୍ୟରୁ ନାଲି ତ୍ରିଭୁଜାକାର ପ୍ଲାଷ୍ଟିକ୍ ଖଣ୍ଡିକ ବଢ଼ାଇଦେଲେ।

ବାହାର କବାଟ ବନ୍ଦ ହେଲା। ବାପା ଫେରି ଆସୁଛନ୍ତି। ଏବେ କହିବେ, ''କେତେଥର କହିଛି ଏଠି ଦୁମ୍ ଦୁମ୍ ହେଇ ଦୌଡ଼ାଦୌଡ଼ି କରିବୁ ନାହିଁ। ଦେଖିଲୁ ତ କ'ଣ ହେଲା ? କୁକୁରବାଲା ଉପରକୁ ଉଠିଆସିଲା।''

କେବେ ଯଦି ଟାଇଗର୍‌କୁ ଏ ଘର ଭିତରକୁ ଛାଡ଼ିଦିଏ ?

ରାସ୍ତାରେ ପୋଲିସ୍ ଗାଡ଼ିର ହର୍ଣ୍ଣ ଶୁଣାଯାଉଛି। ବାପା ତାକୁ କିଛି ନ କହି ମା'ଙ୍କ ପାଖରେ ବସି କଥାବାର୍ତ୍ତା ଆରମ୍ଭ କଲେଣି।

ଅନିଶ୍ ଏବେ ରାସ୍ତାରେ 'ନୋ ଏଣ୍ଟ୍ରି' ବୋର୍ଡ଼ ଲଗାଇ ତା' କାର୍ ପାର୍କ କରି ଅପେକ୍ଷା କଲା।

—ସାନ ପିଲାଟା ଦୌଡ଼ିବନି। ଖେଳିବନି। ସେ ଲୋକଟା ମଣିଷ ନୁହେଁ ?

—ତୁମେ ମା' ପୁଅ ମିଶି ସେ ଡ଼ାୟମଣ୍ଡ୍ ଦୋକାନୀକୁ ଉଠେଇ ଦବ ଏଠୁ।

—ତା'ର ପିଲା ଛୁଆ ନାହିଁ। ଏକମାତ୍ର ସ୍ତ୍ରୀଟିଏ। ସେ ତ ପ୍ୟାରିସ୍‌ରେ ଫେସନ୍ ପୋଷାକ ଦୋକାନ ଖୋଲି ବସିଛି। ଏତେ ପଇସା ନେଇ କ'ଣ କରିବେ ଏମାନେ ? ଏକାଠି ରହୁନାହାଁନ୍ତି ?

—କି ହଇରାଣରେ ପକାଅ ତୁମେ ଲୋକଙ୍କୁ। ଏମିତି ବୁଦ୍ଧି ଦବନି ସେମାନଙ୍କୁ।

—ଜାଣିଛ, ପ୍ରତି ସନ୍ଧ୍ୟାରେ ଅନିନ୍ଦ୍ୟା ସୁନ୍ଦରୀ ଭଦ୍ରମହିଳା ଜଣେ କିଏ ଗାଡ଼ିନେଇ ଆସନ୍ତି। ତାଙ୍କ ସହ ବାହାରିଯାଏ। ବାଜେ ଲୋକ।

—ବିଚରା କ'ଣ କରନ୍ତା ? ସାରାଦିନ ହୀରା ଅଳଙ୍କାର ବିକି କ୍ଳାନ୍ତ ହୋଇଯାଏ ତ। ରାତିରେ ଟିକିଏ ରିକ୍ରିୟେସନ୍...

ବାପା, ମା' ଦୁହେଁ ଖୁବ୍ ହସୁଛନ୍ତି। ବଡ଼ମାନେ ଖାଲି ହସିପାରିବେ ? ତାକୁ କେହି କିଛି କହିବେ ନାହିଁ ?

"ଅନିଶ୍, ଶୁଣ୍। ଏଠିକି ଆ।" ବାପା ଡ଼ାକୁଛନ୍ତି। "ଏବେ ଡ଼ିନାର୍ ଖାଇବା ପୂର୍ବରୁ ମନ ଇଚ୍ଛା ଦୌଡ଼ାଦୌଡ଼ି କରି ଖେଳିପାରୁ। ସାଇକେଲ୍ ବି ଚଲା। କେହି କିଛି କହିବେ ନାହିଁ।"

—ଏ.. ଏ... ଦୁଇହାତ ଉପରକୁ ଟେକି ଖୁସିରେ ଚିତ୍କାର କଲା ଅନିଶ୍।

—ତୋ ପାଇଁ ଭଲ ଖବର ଅଛି। ନେ ଏ ଚିଠି ପଢ଼୍। ଏପ୍ରିଲ୍ ତେଇଶ ! କିଏ ଆସିବ କହିଲୁ ?

ଅନିଶ୍ ଦୌଡ଼ିଗଲା ବାପାଙ୍କ ଶୋଇବା ଘରକୁ। ଟେବୁଲ କ୍ୟାଲେଣ୍ଡର ଆଣି ବ୍ଲୁ ସ୍କେଚ୍‌ପେନ୍‌ରେ ତେଇଶ ଏପ୍ରିଲ୍ ପାଖରେ ଗୋଲ୍ ବୁଲେଇ ଦେଲା।

ଜଣେ ବୟସ୍କ ବ୍ୟକ୍ତିଙ୍କ ଭଳି ସ୍ଥିର ଚିତ୍ତରେ କ୍ୟାଲେଣ୍ଡରକୁ ଚାହୁଁଥାଏ,

ଓଲଟେଇ ଧରି ଚିଠିଟା ଦେଖୁଥାଏ।

ତେଇଶ ଏପ୍ରିଲ୍! ଆହୁରି ଅନେକ ସମୟ ଅଛି ଦିନଟି ଆସିବା ପାଇଁ। ୱାନ୍ ମଂଥ୍। ସକାଳହେଲେ ବିଛଣାରୁ ନ ଉଠି କ୍ୟାଲେଣ୍ଡର୍ ଧରି ଦିନ ଗଣାହୁଏ। ଆଉ କେତେ ଦିନ? ନୀରବରେ କେତେ ସମୟ ବସିଯାଏ ଅନିଶ୍, ମନେ ମନେ କ'ଣ ସବୁ ଚିନ୍ତା କରୁଥାଏ। ମା' ଆସିଲେ ଧରାପଡ଼ିଯାଏ।

– କି ରେ ବେବି, କ'ଣ କରୁଛୁ?

– ଜେଜେମା'ଙ୍କୁ ଫୋନ୍ କରିଦିଅ। ସେ ଶୀଘ୍ର ଆସୁନାହାନ୍ତି କାହିଁକି?

– ତୋର କ'ଣ ଦରକାର? ଖେଳନା? ମୁଁ ସବୁ ଆଣିଦେବି।

ବାପାଙ୍କୁ ଚାହିଁଲା ଅନିଶ୍।

– ନା, ଖେଳନା ଦରକାର ନାହିଁ। ମୁଁ ଚାହୁଁଚି ସେ ଶୀଘ୍ର ଆସନ୍ତୁ।

– ତୁ ଦୁଷ୍ଟାମୀ କରିବୁ ନାହିଁ ତ?

– ସେ ତ ହେଇଯିବ।

– ତେବେ ତାଙ୍କୁ ମନା କରିଦବା ସେ ଆସିବେ ନାହିଁ।

– ନା... ନା। ଘର ଫଟେଇ ଚିତ୍କାର କଲା ଅନିଶ୍।

– ଏ କ'ଣ ହଉଚି? ପାଟି କରୁଛୁ କାହିଁକି?

– ତାଙ୍କୁ ବାପା ମନାକରିଦିଅ। ସେ ଆସିଲେ ତ ମୋତେ ସେମ୍ଭାପରି ସ୍ପଏଲ୍ କରିଦେବେ!

ରେଜେଇରେ ମୁହଁ ଢ଼ାଙ୍କିନେଇ ହସି ପକାଇଲା ଅନିଶ୍।

ତେଇଶ ଏପ୍ରିଲ୍ ପରେ ଅନିଶ୍ ଆଉ ଚଟାଣରେ ଚାଲେ ନାହିଁ। ହୁଏତ ଜେଜେମା'ଙ୍କ କାଖରେ, ନଚେତ୍ ଚାଲିଚା ହୁଏ ତା'ର ଡ଼େଇଁ ଡ଼େଇଁ, ଯେମିତି ତା' ବେବିରାବିଟ୍ ଡ଼େଉଁଥାଏ, ନାଚୁଥାଏ।

– ଜେଜେମା', ଜେଜେମା', ଏବେ ଆମେ କ'ଣ କରିବା? ଆସ, କାର୍ଟୁନ୍ ଦେଖିବା। ମୋତେ ବର୍ଣ୍ଣଭିଟା ଗ୍ଲାସ୍‌ଟା ଦିଅ। ନିଜେ ଧରି ପିଇଦେବି। ତୁମେ ମୋ ପାଖରେ ବସ। ତୁମେ ଜମା ବସୁନ ଯେ। ଥରେ ବି ଖେଳୁନ।

ଅନିଶ୍ କାର୍ଟୁନ୍ କ୍ୟାସେଟ୍ ଲଗାଇବା ବେଳେ ଚାହୁଁଥାଏ ଜେଜେମା' ଅଛନ୍ତି କି ଚାଲିଗଲେଣି।

– ଟିକ୍‌ଲି, ଏଇ ମୁଁ ଆସୁଛି।

– କୁଆଡ଼େ ଯାଉଛ ?

– ଦେଖି ଆସେ, ମା' କ'ଣ କରୁଛି। ଆଜିର ନିଉଜ୍‌ପେପରଟା ନେଇ ଚାଲି ଆସିବି। ଟିକିଏ ଟୟଲେଟ୍ ଯିବି।

ଅଗତ୍ୟା ରାଜିହେଲା ଅନିଶ୍।

– ଦେଖ, ଦୁଇମିନିଟ୍। ମା' ସଙ୍ଗେ ଗପ କରିବା ବନ୍ଦ। ସବୁ ଲେଖାପଢ଼ା ବନ୍ଦ। ମୋ ପାଖରେ ବସିବ, ମୁଁ ଯାହା କହିବି ଶୁଣିବ।

– ଆରେ ସେ ବହିକୁ କାହିଁକି ଚାହିଁଲ ? ମୋତେ ଚାହଁ। ଆଖି ସାଡ଼େ କାହିଁକି ନଉଚ ?

– ଠିକ୍ ଅଛି। ଆଖି ରଖିବି ତୋ ଆଖିରେ। ଆସୁଚି, ଦୁଇମିନିଟ୍। ଜେଜେମା' ହସି ହସି ବାଥ୍‌ରୁମ୍‌ରେ ପଶିଲେ।

– ଜେଜେମା'; ଜଲ୍‌ଦି ଆସ। ଟମ୍ ଏଣ୍ଡ ଜେରୀ ଶେଷ ହେଲା। ଏବେ 'ପପେଇ ଦ' ସେଲର୍'। ଦେଖିବ ଆସ, ପପେଇର ବେବି ରୁଷିଛି। ଆଣ୍ଠେଇ ଆଣ୍ଠେଇ ଘରୁ ପଳେଇ ଯାଉଛି। ଏବେ ପପେଇ ତା' ଭୁ'କୁ ନେଇ ବେବିକୁ ଖୋଜିବାକୁ ଯିବ।

ଆସିବ ନା ରିୱାଇଣ୍ଡ୍ କରିବି ?

– ହେଇ ଆସିଗଲିଣି। ଆଃ ବେବି କୁଆଡ଼େ ଗଲା ?

– ଜାଣିନ ? ପପେଇ ତାକୁ ମାଡ଼ ଦେଲା। ବେବି ରୁଷିଛି, ଏବେ ଘର ଛାଡ଼ି ଚାଲିଯାଉଛି।

– ଏ କ'ଣରେ ? ଆଣ୍ଠେଇ ଆଣ୍ଠେଇ ଦଉଡ଼ିରେ ବ୍ରିଜ୍ କ୍ରସ୍‌କରୁଛି ? ଯେ ତ ବାହାଦୁର୍ ବେବି।

– ଜେଜେମା' କିଛି ବୁଝୁନ। ଏତେ ସ୍ମଲ୍ ବେବି କ'ଣ ସତରେ ଯାଇପାରିବ ? ଏ ପରା କାର୍ଟୁନ୍ !

ଅନିଶ୍ କାଚ଼ ଝରକା ପାଖରେ ଅଧିକ ସମୟ ଠିଆ ହୋଇ ପାରିଲାନି। ପକ୍ଷୀଟା କେତେବେଳୁ ଉଡ଼ିଗଲାଣି। ଟାଇଗର୍‌କୁ ନେଇ ଡ଼ାୟମଣ୍ଡ୍ ଦୋକାନୀ କୁକୁରବାଲା ମଧ ଚାଲିଗଲାଣି। ଏବେ ସେ କ'ଣ କରିବ ?

ମିକି, ମିନି ତଥାପି ଶୋଇଛନ୍ତି ବିଛଣାରେ।

– ଉଠରେ, କ'ଣ ଶୋଇଚ ? ଦୁହିଁଙ୍କୁ କାଖେଇନେଲା ଅନିଶ୍।

– ଜେଜେମା', ତୁମକୁ ଦୁ୍ୟଟି ଫ୍ରି କ୍ୟାଟଲଗ୍‌ରେ ମିକି, ମିନିଙ୍କୁ ଦେଖେଇଥିଲି ନା ? ଏଠି ଏ ଦୋକାନରେ ବି ଅଛି। ଦିଅ, ଏବେ ଦିଅ। ମୋର ଏଇ ଗିଫ୍ଟ ଦରକାର।

– ମା', ମୁଁ କିଛି କହିବି ନାହିଁ। ଯାହା କରୁଛ କର। ବାପା ରାଗିଯାଇ ଚୁପ୍‌ଚାପ୍ ଠିଆହେଲେ। ଜେଜେମା' କାହା କଥା ଶୁଣିଲେନି। ଅନିଶ୍‌କୁ କାଖ କରି କହିଲେ –

ମୋ ଧନ ଟିକ୍‌ଲି, ଆଉ ଜିଦ୍ କରିବୁ ନାଇଁରେ। ଗୁଡ୍‌ବୟ ହବୁ। ମା' ବାପାଙ୍କ କଥା ମାନିବୁ।

ଅନିଶ୍ ଆଖିରେ ଶୁଖିଲା ଲୁହ ଦାଗ ଉପରେ ଆଉଥରେ ଲୁହ ଝରି ଆସିଲା।

ଜେଜେମା' କ'ଣ କାନ୍ଦୁଛନ୍ତି ? ଖେଳନା ଦୋକାନରୁ ମିକି, ମିନି ଦୁଇଟି ଆଣିଦେଲେ ଜେଜେମା'। ସେ ଇଣ୍ଡିଆ ଫେରିଯିବାକୁ ଦିନଟିଏ ବାକି।

ସକାଳୁ ସେ ଉଠି ଚାଲିଗଲେ। ବାପା ତାଙ୍କୁ ଏୟାର୍‌ପୋର୍ଟ୍ ନେଇଗଲେ। ସେ ତ ଶୋଇଯାଇଛି। ଏତେ ସକାଳୁ ନିଦ ଭାଙ୍ଗିଲା ନାହିଁ। ସେ ବି ତାଙ୍କୁ ଉଠାଇଲେ ନାହିଁ। ବ୍ରସେଲ୍‌ସ୍‌ରୁ ଫ୍ରାଙ୍କ୍‌ଫ୍ରଟ୍। ସେଠାରୁ ଇଣ୍ଡିଆ।

ଶୋଇବା ଘରୁ ଆସି ଖେଳଘରେ ବସିଛି ଅନିଶ୍।

ବସିଛନ୍ତି ସେମାନେ ସଭିଏଁ– ରାଜା ଲାୟନ୍, ଦେଶୀ ଭୁ, ବ୍ରାଉନି ଭୁ, ଟେଡ଼ି ବିଅର୍‌ମାନେ। ମାମା ରାବିଟ୍, ବେବି ରାବିଟ୍ ଲେଜି ପୁସି, ବିଗ୍ ପୋଲାର ବିଅର୍, ଚିମ୍ପୁ ସିଂପାଜୀ, ପ୍ୟାରଟ୍, ଅନ୍ୟ ବାର୍ଡ଼୍ ଆନିମାଲ୍‌ମାନେ, ଅଥଚ ଗ୍ରିଡ଼ି ରାବିଟ୍ ଯାଇ ସେପାଖ କଣରେ କୋଲ୍‌ଡ଼୍ ଡ୍ରିଙ୍କ୍‌ସ୍ କ୍ରେଟ୍ ପାଖରେ !

– ନୋ.. ନୋ ଗ୍ରିଡ଼ି..। ହସୁ ହସୁ ଆଖିରେ ପାଣି ଆସିଲା ଅନିଶ୍‌ର। ଗତ ରାତିରେ ଖୁବ୍ ଖେଳ ହୋଇଥିଲା।

ମିକି, ମିନି ଦୁହେଁ କୋଳରେ ବସିଛନ୍ତି। ତାଙ୍କୁ ଆଉ ଟିକିଏ ଚାପିନେଲା ଅନିଶ୍।

ବାପା ଏୟାରପୋର୍ଟ୍‌ରୁ ଫେରି ଆସିଥିବେ। ହେଇ ତ ମା', ବାପା ଦୁହେଁ ଠିଆହୋଇଛନ୍ତି ଖେଳଘରର କବାଟ ପାଖରେ।

– ଅନିଶ୍, କାନ୍ଦୁଛୁ କିରେ ? ଜେଜେମା'ଙ୍କ କଥା ମନେ ପଡୁଚି ?

ମିକି, ମିନିଙ୍କୁ ତଳେ ପକେଇଦେଇ ଭେଁ କରି କାନ୍ଦି ଉଠିଲା ଅନିଶ୍।

– ଏଁ.. ଏଁ.. ତଳେ ପଡ଼ିଗଲା।

ମା', ବାପା ପରସ୍ପରକୁ ନୀରବରେ ଚାହିଁ ରହିଲେ।

– ଆହା ପଡ଼ିଗଲା ?

ମା' ମିକି, ମିନିଙ୍କୁ ତଳୁ ଉଠେଇ ତା' ହାତକୁ ବଢ଼େଇଦେଲେ। ଅନିଶ୍‌କୁ କୋଳକୁ ନେଇ କହିଲେ, ମୋ ସୁନା ବେବିଟା !

□ □

# ଭଙ୍ଗାଘର

କଥାଟା ଯେ ଯୁକ୍ତି ଆଡ଼କୁ ଯିବ, ସେମାନେ କେହି ଭାବି ନ ଥିଲେ। ବିଶେଷ କରି ଏମିତି ଏକ ପାର୍ଟିରେ। ସେମାନେ ପରସ୍ପର ସହ ବେଶ୍ ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା ଆରମ୍ଭ କରିଥିଲେ।

—ନାରୀର ସ୍ୱାତନ୍ତ୍ର୍ୟ, ନାରୀର ଅଧିକାର ପାଇଁ ସାରା ବିଶ୍ୱରେ ଚହଳ ପଡ଼ିଛି। ଆପଣ ଯେ ସେମାନଙ୍କ ସମସ୍ୟା ନେଇ କିଛି କାମ କରୁଛନ୍ତି, ଲେଖାଲେଖି କରୁଛନ୍ତି, ତା' ଅତ୍ୟନ୍ତ ଖୁସିର କଥା।

ଭାରତରୁ ଆସିଥିବା ଏହି ସାଂବାଦିକଙ୍କୁ ମିସେସ୍ ମେହେଟ୍ଟା ପରିଚିତ କରାଇ ଦେବା ପରେ ତାଙ୍କ ସହ ସ୍ୱନାମଧନ୍ୟ ଫେସନ୍ ଡ଼ିଜାଇନର୍ ମିସେସ୍ ବଚ୍ଚନ୍ ଆଳାପ ଜମେଇଥିଲେ।

ଅନ୍ୟ ପାର୍ଶ୍ୱରୁ ଅବାନ୍ତର କଥା କେତେପଦ ଧସେଇ ପଶିଆସିଲା।

—ଯାଃ କ'ଣ କହୁଚ ? ଆମ ଦେଶରେ କ'ଣ ଚାଲିଛି ? ନାରୀ ନିର୍ଯ୍ୟାତନା, ତା'ର ଯନ୍ତ୍ରଣା ସୀମା ଟପିଲାଣି। ସାଧାରଣ ଭାବେ ମଣିଷଟିର ପରିଚୟ ପାଇବାକୁ ଯିଏ ଅଯୋଗ୍ୟ ବିବେଚିତ ହେଉଛି, ତା'ର ସମ୍ମାନର ପ୍ରଶ୍ନ ଉଠୁଛି କାହିଁକି ?

—ରିଯେଲି ସରପ୍ରାଇଜିଂ ! ଆମର କେବଳ ପୁରୁଷମାନେ 'ଗଡ୍' ଅଛନ୍ତି। ମନ୍ଦିରରେ, ଆମ ପୂଜାଘରେ ସେମାନେ ହିଁ ପୂଜା ପାଉଛନ୍ତି। ହ୍ୱାଟ୍ ଏବାଉଟ୍ ଉଇମେନ୍ ? 'ଗଡ୍ଡେସ୍' କେହି ପୂଜା ପାଆନ୍ତି ନାହିଁ ତ ?

—ଓଃ ନୋ। ହିନ୍ଦୁ ଧର୍ମ, ଆମର ସଂସ୍କୃତି ବହୁ ପୁରାତନ। ବେଦରେ ନାରୀକୁ ଦେବୀ ଭାବରେ ସମ୍ମାନିତ କରାଯାଇଛି। ଶକ୍ତିରୂପିଣୀ ମା'ଦୁର୍ଗା, କାଳୀ

ଭଗବତୀ, ପାର୍ବତୀ, ଧନରତ୍ନ, ଐଶ୍ୱର୍ଯ୍ୟମୟୀ ମା'ଲକ୍ଷ୍ମୀ, ବିଦ୍ୟାଦାୟିନୀ ସରସ୍ୱତୀ, ଏମିତି ବହୁ ନାମରେ ପୂଜା ପାଉଛନ୍ତି ମନ୍ଦିରମାନଙ୍କରେ ଏବଂ ହିନ୍ଦୁ ପରିବାରର ପୂଜା ଆସ୍ଥାନରେ ମଧ୍ୟ।

ସମସ୍ତଙ୍କ ଦୃଷ୍ଟି ପ୍ରସାରିତ ହେଲା ଏପାଖକୁ। ଅତ୍ୟନ୍ତ ଆଗ୍ରହରେ ସେମାନେ ଶୁଣୁଥିଲେ। ଏଭଳି ସୁନ୍ଦରଭାବରେ ନିଜର ଚିନ୍ତାଧାରା, ବିଚାର ଉପସ୍ଥାପନା କରିବାର ଶୈଳୀ ସେ ଜାଣିଛନ୍ତି! ସେ ସଲ୍‌ମା।

ସଲ୍‌ମାକୁ ସେତେବେଳେ ଯିଏ ଦେଖିବ ଜଣେ ଭାରତୀୟ ଦେବୀ ହିଁ କହିବ। ସଫା, ଉଜ୍ଜ୍ୱଳ ରଂଗ, ତୀକ୍ଷ୍ଣ ଗଢ଼ଣ, ଶାନ୍ତ ସୁନ୍ଦର ମୁହଁ, ଓଠରେ ସ୍ମିତହାସ୍ୟ। ପରିଧାନ ସରୁ ଜରି ଧଡ଼ି ଥିବା ସୁନେଲି ରଂଗର ଖଣ୍ଡେ ସିଲ୍‌କ ଶାଢ଼ି, ମାଚିଂ ବ୍ଲାଉଜ। କପାଳରେ ଛୋଟ ନାଲି କୁଙ୍କୁମ ବିନ୍ଦୁ।

ପାର୍ଟିରେ ଉପସ୍ଥିତ ଅନ୍ୟ ଭଦ୍ର ମହିଳାମାନଙ୍କ ମଧ୍ୟରେ ସେ କିପରି ସ୍ୱତନ୍ତ୍ର ମନେ ହେଉଥିଲା। ତଥାପି ଚନ୍ଦ୍ରରେ କାଳିମା ଥିବା ଭଳି ସଲ୍‌ମାକୁ ଆଚ୍ଛନ୍ନ କରିଥାଏ ଏକ ଉଦାସ ଭାବ। ଏବଂ ସେଇ ଶ୍ରଦ୍ଧା, ବଂଧୁତା ମଧ୍ୟରେ ଅନ୍ୟକୁ ଆପଣାର କରିବାର ସ୍ୱଭାବ ବାସ୍ତବିକ ତାକୁ ଅନନ୍ୟ କରିଥିଲା।

ନିଜ ଦେଶ ଛାଡ଼ି ମଧ୍ୟପ୍ରାଚ୍ୟର ଜୋର୍ଡ଼ାନ୍‌ରେ ବିତିଗଲା ଗୋଟିଏ ଯୁଗ। ଶିଶୁରୋଗ ବିଶେଷଜ୍ଞ ଡ଼କ୍ଟର ସଲ୍‌ମା 'ଚାଇଲଡ୍‌ ହେଲ୍‌ଥ କ୍ଲିନିକ୍' ସହ ଆରମ୍ଭ କରିଥିବା 'ମ୍ୟାରେଜ୍ କାଉନ୍‌ସେଲିଂ କ୍ଲିନିକ୍' କିଭଳି ଯେ ଫଳପ୍ରଦ ଭାବେ ସଂଭାଳି ପାରିଛନ୍ତି ତା' ଅମାନ୍‌ରେ ରହୁଥିବା ତା'ର ଭାରତୀୟ ବଂଧୁମାନଙ୍କୁ ବିସ୍ମିତ କରେ।

ଅମାନ୍‌ର ବିଶିଷ୍ଟ ବ୍ୟକ୍ତିମାନେ ତାକୁ ସମ୍ମାନ ଜଣାନ୍ତି। କିଙ୍ଗ୍ ହୁସେନ୍‌ଙ୍କ ରାଜକୀୟ ପାର୍ଟିରେ ଆରବ ଭାଷାରେ ସ୍ୱଚ୍ଛନ୍ଦରେ ଆଳାପ କରୁଥିବା ସଲ୍‌ମାକୁ ପ୍ରଥମେ ଭେଟିଥିବା କେହି ତାକୁ ଜୋର୍ଡ଼ାନ୍‌ର ନାଗରିକ ହିଁ ଭାବିଥାଆନ୍ତି। ତା'ର କାରଣ ତାଙ୍କର ସ୍ନେହୀ ସ୍ୱଭାବ ଏବଂ ଅମାନ୍‌ରେ ରହୁଥିବା ବିଭିନ୍ନ ଦେଶର ଲୋକ, ସ୍ଥାନୀୟ କେହି କେହି, ସ୍ୱାମୀ, ସ୍ତ୍ରୀଙ୍କ ମଧ୍ୟରେ ଉପୁଜିଥିବା ସାଂଘାତିକ ଅସନ୍ତୋଷରୁ ମୁକ୍ତି ପାଇବାପାଇଁ ସଲ୍‌ମାଙ୍କ କ୍ଲିନିକ୍‌ରେ ପହଞ୍ଚିଥାଆନ୍ତି।

ସେମାନଙ୍କ ମାନସିକ ଦ୍ୱନ୍ଦ୍ୱକୁ ନିଜ ମଧ୍ୟକୁ ନେଇ ଜଣେ ଆତ୍ମୀୟ ଅନୁଭବୀ ଭଳି ସଂଗ୍ରାମ କରେ ସଲ୍‌ମା। କେତେ ଭଗ୍ନ ଦାମ୍ପତ୍ୟ-ଜୀବନ ଗଢ଼ିହୁଏ ତାଙ୍କ

ଉଦ୍ୟମରେ। ନିହାତି ଦୁର୍ବିସହ ନହେଲେ ଶପଥ ନେବା ଭଳି ସେମାନଙ୍କୁ ଏକାଠି କରିବାର ଚେଷ୍ଟାରେ ସେ ଲାଗି ରହେ।

ଜୋର୍ଡ଼ାନ୍‌କୁ ପ୍ରଥମ କରି ଆସିଥିବା ସାଂବାଦିକ ଜଣଙ୍କ ଏ ସଂପର୍କରେ କିଛି ପ୍ରଶ୍ନ ପଚାରିବାକୁ ଇଚ୍ଛାକରି ସଲ୍‌ମାର ପାଖ ସୋଫାକୁ ଉଠି ଆସିଥିଲେ। କଥା ଆରମ୍ଭ କରିବାକୁ ଯାଇ କହିଲେ, ''ମାଡ଼ମ୍, 'ଜୋର୍ଡ଼ାନ୍ ଟାଇମ୍‌ସ' ବେଶ୍ ଲେଖିଛି ଆପଣଙ୍କ ସଂପର୍କରେ। ଆଜିର କାଗଜ ଦେଖିଛନ୍ତି ?''

''ହଁ, ଦେଖିଛି।'' ସଲ୍‌ମାର ସଂକ୍ଷିପ୍ତ ଉତ୍ତର।

ସେମାନଙ୍କ କଥାବାର୍ତ୍ତା ଅଧିକ ଆଗେଇ ପାରିଲାନି। ସାଂବାଦିକ ଜଣକ ସଲ୍‌ମାକୁ ଆଉ କିଛି ପଚାରିବାକୁ ଯିବାବେଳେ ସେପାଖରୁ ଲେଡ଼ି ରାଷ୍ଟ୍ରଦୂତ କିଛି କହୁଥିବାର ଶୁଣାଗଲା। ନିକଟରେ ଭାରତୀୟ ଦୂତାବାସର ପରିସର ମଧ୍ୟରେ ହେବାକୁ ଥିବା ଇଦ୍-ହୋଲି ମିଳନ୍ ଉତ୍ସବରେ ନିଜର ପିଲାମାନଙ୍କୁ ନେଇ ସମସ୍ତେ ଯେପରି ନିଶ୍ଚୟ ଆସିବେ, ତା' ସେ ପୁନର୍ବାର ମନେ ପକାଇ ଦେଇଥିଲେ।

ସବୁଥର ଭଳି ଏ ବର୍ଷ ମଧ୍ୟ ମିଷ୍ଟର ଓ ମିସେସ୍ ବଟନ୍ ଏହି ଏକତ୍ରୀକରଣର ଦାୟିତ୍ୱ ବହନ କରିଥିଲେ।

ସମସ୍ତେ ଏଭଳି ସାଂଗଠନିକ କାର୍ଯ୍ୟ କରିପାରନ୍ତି ନାହିଁ। ମାତ୍ର କେହି କେହି ବିଶେଷ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ସଂଭାଳି ନେଇ ସ୍ୱଚ୍ଛନ୍ଦରେ ତାହା ତୁଲାଇ ପାରନ୍ତି। ହାତ ଆଙ୍ଗୁଠିରେ ଗଣିବା ଭଳି କେତୋଟି ବା ଭାରତୀୟ ପରିବାର! ତେବେ କେତେକ ନିମନ୍ତ୍ରିତ ପରିଚିତ ବିଶିଷ୍ଟ ନାଗରିକ ଅମାନ୍‌ର ଏବଂ ସେମାନଙ୍କ ସହ ଦୂତାବାସର ସମସ୍ତ କର୍ମଚାରୀ!

ସଲ୍‌ମା ନୀରବ। କିଛି ସମୟ ପୂର୍ବରୁ ତାଙ୍କ ସହ ଆଳାପ କରୁଥିବା ଭାରତୀୟ ସାଂବାଦିକ ଜଣଙ୍କ ଜୋର୍ଡ଼ାନ୍‌ରେ ତାଙ୍କର ଅନ୍ୟକାର୍ଯ୍ୟକ୍ରମ ବନ୍ଦକରି ଏହି କୌତୁକପ୍ରଦ ସୁନ୍ଦର ଉତ୍ସବଟିରେ କିପରି ଯୋଗ ଦେବେ ଏବଂ ଫଟୋ ଫିଚର୍‌ଟିଏ ପ୍ରସ୍ତୁତ କରିପାରିବେ, ସେ ସଂପର୍କରେ ଯୁବ ଡ଼ିପ୍ଲୋମାଟ୍ ସିଦ୍ଧାର୍ଥଙ୍କ ସହ ଆଲୋଚନା କରୁଥିଲେ।

''ପ୍ଲିଜ୍ ଆସନ୍ତୁ।'' ଡ଼କ୍ଟର ମେହେଟ୍ଟା, ମିସେସ୍ ସୁଷମା ମେହେଟ୍ଟା ସମସ୍ତଙ୍କୁ ଡ଼ିନାର୍ ଟେବୁଲ୍ ପାଖକୁ ଆସିବା ପାଇଁ ଅନୁରୋଧ ଜଣାଇଲେ। ସେ ଦୁହିଁଙ୍କୁ ଏକାଠି ଦେଖି ସଲ୍‌ମାର ମୁହଁ ଉଜ୍ଜ୍ୱଳ ଦେଖାଗଲା।

—ଆଫଟର ମେନି ଏ ସମର୍ !

—ଥ୍ୟାଙ୍କ୍ ଗଡ୍, ଏ ଦୁହେଁ ତେବେ ଏକାଠି ହେଲେ !

କେହି କେହି ଏଭଳି କହୁଥିବାର ଶୁଣାଗଲା ।

ପାର୍ଟିର ଉଦ୍ଦେଶ୍ୟଟି ଆଉ ଗୋପନ ହୋଇ ରହି ନ ଥିଲା । ପାଞ୍ଚବର୍ଷର ପୁଅ ସଂପଦର ଜନ୍ମଦିନ । ଡ଼କ୍ଟର ମେହେଟ୍ଟା, ମିସେସ୍ ସୁଷମା ମେହେଟ୍ଟାଙ୍କ ପୁନର୍ମିଳନ ଉପଲକ୍ଷେ ସେମାନେ ଦୁହେଁ ଯେ ଏହି ବିଶେଷ ପାର୍ଟିର ଆୟୋଜନ କରିଛନ୍ତି ତା' ପ୍ରାୟ ସମସ୍ତେ ଜାଣିଥିଲେ । ହୁଏତ ଏଥିପାଇଁ କେହି କେହି ଅତିଥି ସଲ୍‌ମାକୁ ଅଭିନନ୍ଦନ ଜଣାଉଥିଲେ ।

—ଆପଣ ଦୁହିଁଙ୍କୁ ଦେଖି ମନ ପୂରିଯାଉଛି । ସୁନ୍ଦର ଦିନଟିଏ ଆଜି ।

ସଲ୍‌ମା ସପ୍ରଶଂସ ସ୍ୱରରେ କହିଲା । ଡ଼କ୍ଟର ମେହେଟ୍ଟା, ସୁଷମା ମେହେଟ୍ଟା ଦୁହେଁ ଶ୍ରଦ୍ଧାରେ ଚାହିଁ ରହିଲେ ସଲ୍‌ମାକୁ ।

—ଆଲ୍ଲା ଆପଣଙ୍କ ପିଲା ଦୁହିଁଙ୍କୁ ଆନନ୍ଦରେ ରଖନ୍ତୁ, ଡ଼କ୍ଟର ସଲ୍‌ମା ।

—ଭାବୀ ! ସେଇ ପ୍ରାର୍ଥନା ଗଡ୍ ସୁପ୍ରିମ୍‌ଙ୍କ ପାଖରେ ମୋର ତୁମ ଦୁହିଁଙ୍କ ପାଇଁ ଏବଂ ଆଜି ଦିନରେ ବେବି ସଂପଦ ପାଇଁ ।

ନିଃଶେଷ ପାନପାତ୍ର କେତୋଟି ଅନାବଶ୍ୟକ ଭାବରେ ପଡ଼ି ରହିଥିଲା ପାଖ ପାଖ ଟି'ପୟମାନଙ୍କରେ । ଅତିଥିମାନେ ଉଠିଯାଇଥିଲେ ଡ଼ିନର୍ ଟେବୁଲ୍ ପାଖକୁ ।

ସୁସଜ୍ଜିତ ଡ଼ିନର୍ ଟେବୁଲକୁ ଆବୃତ୍ତ କରିଥିବା ଅତିଥିମାନଙ୍କ ଧାଡ଼ିରେ ଆଗକୁ ଆଗକୁ ଚାଲିଲା ସଲ୍‌ମା ।

ନିଜର ପ୍ଲେଟ୍‌ଟି ନେଇ ବଡ଼ ଟ [illegible] ପାଖରେ ଥିବା କାଚ ଝରକା ଦେଇ ରାତିର ସହରକୁ ଦେଖୁଥି [illegible] ପାହାଡ଼ର ଶୀର୍ଷ ଦେଶରେ ଷ୍ଟାର୍ ହୋଟେଲ୍‌ଟିର ଆଲୋ [illegible] ନଭଶ୍ଚୁମ୍ବୀ ପ୍ରାସାଦ ସବୁ ଏହି ଆଭିଜାତ୍ୟସଂପନ୍ନ ସ୍ଥାନଟିକୁ [illegible] ମ କରିଛି । ଅମାନ୍ ଆକାଶରେ ତାରା, ଚନ୍ଦ୍ରର ସୌନ୍ଦର୍ଯ୍ୟ ଢ [illegible] ଲୋକରେ ଝାପ୍‌ସା ହୋଇଉଠିଛି ।

ଅଥଚ ସାମ୍ନା ବଗି [illegible], ହଳଦିଆ, କଳା, ଫିକା ନାଲି ରଙ୍ଗର ବେଶ୍ ବଡ଼ ବଡ଼ [illegible] ଲତାରେ ପେଛି ପେଛି ଅଙ୍ଗୁର, ସବୁଜ ଲନ୍, ମାର୍ବଲ୍‌ର [illegible] ରା କୁଣ୍ଡମାନଙ୍କରେ ସିଜନାଲ୍ ଫୁଲ

ସବୁ ଦେଖିଲେ ମନ ଖୁସି ହୁଏ।

ଦିନର ଭ୍ରମ ସୃଷ୍ଟିକରି ଉଜ୍ଜଳ ବିଜୁଳି ଆଲୋକରେ ବଗିଚା ସବୁ ସୁସ୍ପଷ୍ଟ ହୋଇ ଉଠିଛି।

ହୁଏତ ସଲ୍‌ମା ପାଇଁ ଦିନଟି ଖୁସିର। କେବେ ବି କୌଣସି ପାର୍ଟିରେ ସେ ଏତେ ସମୟ ରହିପାରେ ନାହିଁ। ସାରାଦିନର କ୍ଳାନ୍ତି ପରେ ଢୋର୍‌କରି ଦେହ ଘୋସାରିବା ସାର ହୁଏ।

କିଏ ସେପାଖରୁ ହସି ହସି ଆସୁଛି। ରୋହିତ୍? ରୋହିତ୍ ଧାବନ୍। ଅମାନ୍‌ରେ ନୂଆକରି ଏକ କୋଲ୍‌ଡ୍ରିଙ୍କ୍ ଫ୍ୟାକ୍ଟ୍ରି ଖୋଲିଥିଲା ଜାପାନ୍‌ର କେଉଁ ଏକ କଂପାନୀର ସହାୟତାରେ !

କ'ଣ ବା ସଂପର୍କ ସବୁ ତୁଟିଯିବା ପରେ? କେବେ କୋଉଠି ଦେଖା ହୋଇଯାଏ। ପ୍ରଷ୍ଠ ପ୍ରଷ୍ଠ ସ୍ମୃତି ଛୁଇଁଯାଉଛି।

ହମିଦ୍‌ର ବଂଧୁ। କୁଇନ୍ ଆଲିୟା ଏୟାରପୋର୍ଟ୍‌କୁ ଧାଇଁ ଆସିଥିଲା ସେମାନଙ୍କୁ ପାଛୋଟି ନେବାକୁ।

ହମିଦ୍ ଚିହ୍ନେଇ ଦେଲା, "ଦେଖ ସଲ୍‌ମା, ଇଣ୍ଡିଆନ୍ ଖୋଜୁଥିଲ ପରା। ତୁମପାଇଁ ଯାକୁ ରଖେଇ ଦେଲି ଜୋର୍ଡ଼ାନ୍‌ରେ।"

ଦୁହିଁଙ୍କର ଉଚ୍ଛ୍ୱସିତ ହସ।

—ହ୍ୟାଲୋ, ବହୁତ ଦିନ ପରେ ଦେଖା। ଖବର ବି ରଖ ନାହିଁ।

ରୋହିତ ସହ କଥାବାର୍ତ୍ତା କରିବାର ଇଚ୍ଛା ନ ଥିଲା। ତଥାପି ସଲ୍‌ମା ପଚାରିଲା, "କିମିତି ଅଛ? ଇଣ୍ଡଷ୍ଟ୍ରୀ କିମିତି ଚାଲିଛି?"

"ହମିଦ୍ ସହ ଦେଖାହୁଏ?"

ଲୋକଟାର ଭଦ୍ରାମୀ ବୋଲି କିଛି ନାହିଁ! ଓଲଟା ପ୍ରଶ୍ନ ପଚାରୁଛି!!

ସଲ୍‌ମା ଉତ୍ତର ଦେଲାନାହିଁ। ହସିଲା, "ପିଲାମାନେ ଖୋଜୁଥିବେ। ରାତି ଡେରି ହେଲାଣି। ମୁଁ ଆସେ।"

ପାର୍ଟି ଶେଷ ହୋଇନାହିଁ। ରାଷ୍ଟ୍ରଦୂତ, ଲେଡ଼ି ରାଷ୍ଟ୍ରଦୂତ ଏ ପର୍ଯ୍ୟନ୍ତ ଯାଇ ନାହାଁନ୍ତି। ତଥାପି ସୁଷମା ମେହେଟାଙ୍କୁ କ୍ଷମା ମାଗି ରାସ୍ତାକୁ ଓହ୍ଲେଇଗଲା ସଲ୍‌ମା।

ମୁଖ୍ୟରାସ୍ତାକୁ ଗାଡ଼ି ବାହାର କରି ଆଣିବା ପରେ ରୋହିତ୍‌ର ଶେଷ

କଥା କେତେପଦ ମନେପଡ଼ିଲା। ଇଚ୍ଛା ହେଲା, ଏବେ ଯଦି ରୋହିତ୍‌କୁ ପାଖରେ ପାଇବ, ପଚାରିବ– "ହମିଦ୍! ସେ କିଏ ?"

ସେ ଥିଲା ଆଉ ଜନ୍ମର କଥା। ସଲମା ଖୁବ୍ କଷ୍ଟ ପାଉଛି। ନିଜ ସହ ଲଢ଼େଇ କରି ଦୂରେଇ ଦେଇଛି ହମିଦ୍‌କୁ ତା' ମନରୁ, ତା' ଆତ୍ମାରୁ, ତା' ଜୀବନରୁ !

ଦିଲ୍ଲୀରେ ମେଡ଼ିକାଲ୍ କଲେଜ୍‌ରେ ଏକାଠି ପଢୁଥିବା ହମିଦ୍, ଅମାନ୍‌ରେ ନିଜର କ୍ଲିନିକ୍ ଖୋଲି ଡ଼ାକ୍ତରୀ ଚିକିତ୍ସା ଆରମ୍ଭ କରିଥିବା ହମିଦ୍ ମଧ୍ୟରେ ଆକାଶ ପାତାଳର ଫରକ୍।

ସଲ୍‌ମା ପିଲାଦିନରୁ ଭଲ ଛାତ୍ରୀ। ଭଲ ପଢ଼େ। ଏଣୁ ଏମିତିରେ ବୁଦ୍ଧିମାନ୍ ଛାତ୍ରଛାତ୍ରୀଙ୍କ ପ୍ରତି ତା'ର ଯଥେଷ୍ଟ ଶ୍ରଦ୍ଧା, ସମ୍ମାନ। ପ୍ରଥମେ ହମିଦ୍ ଏସବୁର ଓଲଟା ଅର୍ଥ କରି ବସିଲା।

ସଲ୍‌ମା ଆଭିଜାତ୍ୟସଂପନ୍ନ ପରିବାରର ଝିଅ। ସ୍ନେହୀ, ଶାନ୍ତ, ଭଦ୍ର, ବୁଦ୍ଧିମତୀ। ତା'ର ପଦଟିଏ କଥା, ପ୍ରତିଟି କାର୍ଯ୍ୟକଳାପର ପ୍ରଶଂସକ ହମିଦ୍। ବଂଧୁତା, ଘନିଷ୍ଠତା ଦୀର୍ଘ ପାଞ୍ଚ-ଛଅ ବର୍ଷର।

ଏକାଠି କ୍ଲାସ କରିବା, ଅନେକ ସମୟ ପର୍ଯ୍ୟନ୍ତ ପ୍ରଫେସର ବୁଝେଇଥିବା ବିଷୟ ପୁନଃଆଲୋଚନା କରିବାରେ ଦୁହେଁ ସମୟ ଜାଣି ପାରନ୍ତି ନାହିଁ।

ରେଷ୍ଟୁରାଣ୍ଟ୍‌ରେ ସ୍ନାକ୍ସ, ଡ଼ିନାର୍ ପରେ ପରେ ଆଇସକ୍ରୀମ୍ ପାରଲ୍‌ରରୁ ଫେରି ବିଳମ୍ବ ରାତି ପର୍ଯ୍ୟନ୍ତ ବହି ଧରି ବସେ ସଲ୍‌ମା। ହଷ୍ଟେଲ୍ କୋଠରୀଟିରେ ମୋଟା ମୋଟା ବହିରେ ମନ ଲଗାଇ ବସି ରହେ ହମିଦ୍।

ସେମାନେ ପରସ୍ପରକୁ ଚାହୁଁଥିଲେ, ଅଥଚ ବାଧାଥିଲା ସଲ୍‌ମା ପକ୍ଷରୁ। ସେ ଜାଣିଥିଲା ହମିଦ୍ ତା' ଦେଶ ଜୋର୍ଡ଼ାନ୍‌କୁ ଫେରିଯିବ ପଢ଼ା ଶେଷ କରି। ଅଥଚ ସଲ୍‌ମା ଇଣ୍ଡିଆରୁ ବିଦାୟ ନେବ, ହୁଏତ ଚିରଦିନ ଲାଗି।

ଏବେ ନହେଲେ ବି ଦିନେ ହମିଦ୍ କହିବ, "ସଲ୍‌ମା, ତୁମେ ଜୋର୍ଡ଼ାନ୍‌ର ସିଟିଜେନ୍‌ସିପ୍ ଗ୍ରହଣ କର।"

ଦେଶକୁ ଛାଡ଼ିବା ଦୁଃଖରେ ହମିଦ୍‌କୁ କିଛି କହିପାରେନା ସଲ୍‌ମା। ନା ଦେଶକୁ ଛାଡ଼ି ପାରୁଛି ନା ହମିଦ୍‌କୁ !

ଏଭଳି ପରିସ୍ଥିତିରେ ରକ୍ଷା କଲେ ଆବ୍‌ବାଜାନ୍। ହମିଦ୍‌ର ଅଗାଧ ପ୍ରଜ୍ଞା,

ଦେବୋପମ ରୂପ, ବିଶେଷ କରି ସଲ୍‌ମାର ମନ।

"ବେଟୀ ସଲ୍‌ମା ପାଇଁ ପ୍ରପର୍ ମ୍ୟାଚ୍। ସେ ନିଜେ ଚାହୁଁଚି ହମିଦ୍‌କୁ। ଆମେ ବାଧା ଦେବା କାହିଁକି? ଇଣ୍ଡିଆରୁ ଜୋର୍ଡ଼ାନ୍ କେତେ ଘଣ୍ଟାର ବା ରାସ୍ତା। ଆମେ ଯିବା। ସେ ଆସିବ। ବେଟୀର ସୁଖ ଦେଖିବା ନା ଦୂରକୁ ଯାଉଚି ଭାବିବା?"

ଅମ୍ମିଜାନ୍ ବୁଝିଗଲେ।

ଆଖି ପୋଛିଲା ସଲ୍‌ମା। ସେ କେବେ ମନୋବଳ ହରେଇ ନାହିଁ, ଆଖିରୁ ଲୁହ ଝରେଇ ନାହିଁ। ଅଥଚ ଖୁବ୍ ମନେ ପଡୁଛି ସେମାନଙ୍କ କଥା। ଦଶ ବର୍ଷ ମଧ୍ୟରେ ଥରଟିଏ ଦେଖା। ସେ ଏକା ଯାଇ ବୁଲି ଆସିଥିଲା। ପିଲାଏ ଦେଖି ନାହାଁନ୍ତି। 'ଗ୍ରାଣ୍ଡପା, ଗ୍ରାଣ୍ଡମା'ଙ୍କୁ ଦେଖିବୁ। ଇଣ୍ଡିଆ ଯିବୁ' ଅନେକ ଥର କହିଛନ୍ତି।

ଗାଡ଼ିର ଗତି ମନ୍ଥର ହେଉଛି। ଚିନ୍ତାରେ ବୁଡ଼ି ରହିଛି ସଲ୍‌ମା।

ଏ ସହର ତା' ମନରେ ମାୟା ଲଗେଇ ଦେଇଛି। ନୂଆ ଜୀବନର ଆରମ୍ଭରେ ସେମାନେ ପ୍ରଥମ କରି ପାଦ ଦେଲେ ଅମାନ୍‌ରେ। ଅମାନ୍‌ଠାରୁ କିଛି ଦୂରରେ ଗାଁ ପାଖରେ ଥିବା ପଚାଶ ବର୍ଷ ତଳର ପୁରାତନ ଘରଟିରେ ସେ ଭେଟିଥିଲା ହମିଦ୍‌ର ବାପା, ମା', ଭାଇ, ବିବାହିତା ଭଉଣୀ ଦୁଇଜଣଙ୍କୁ। ସେମାନେ ଅତିଥି ଭଳି ଆସିଥିଲେ ନବବଧୂକୁ ସ୍ୱାଗତ ଜଣାଇବାକୁ। ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ବିଚ୍ଛିନ୍ନ ହୋଇ ରହିଛନ୍ତି ସେମାନେ ଅର୍ଥ ଅର୍ଜନର ସୂତ୍ର ଖୋଜି। ଐଶ୍ୱର୍ଯ୍ୟର ମୋହ ଖୁବ୍ ବେଶୀ! ବିଭିନ୍ନ କାର୍ଯ୍ୟର ଆଳ ଦେଖାଇ ଭାଇ, ଭଉଣୀ, ଏମିତିକି ଶେଷରେ ଲଣ୍ଡନ୍‌ରେ ରହୁଥିବା ବାପା, ମା' ମଧ୍ୟ ଅଳ୍ପ କେତୋଟି ଦିନ ରହି ଫେରି ଯାଇଥିଲେ।

ଜୀବନ ଆରମ୍ଭ ହୋଇ ନାହିଁ, ଦାୟିତ୍ୱ ନ ଥିବା ଲଗାମ୍ ଛଡ଼ା ସମୟ। ପାଠ, ଚାକିରି, ପିଲାଛୁଆଙ୍କ ଜଂଜାଳ ଏ ସବୁ ଆରମ୍ଭ ହେବା ପୂର୍ବରୁ ହମିଦ୍ ପ୍ଲାନ୍ କରି ବସେ : ତୁମକୁ ପୃଥିବୀର ସବୁ ଦେଶ ବୁଲେଇ ଆଣିବି, ସଲ୍‌ମା।

ଜୀବନ ଏତେ ସୁନ୍ଦର ହୋଇପାରେ! ବହୁ ବର୍ଣ୍ଣର ଗୋଲାପ, ଅଙ୍ଗୁର ଲତାରେ ପେଛି ପେଛି ଅଙ୍ଗୁର। ଜୋର୍ଡ଼ାନ୍‌ର ଋତୁ ସ୍ୱପ୍ନମୟ ହୋଇ ଉଠିଥିଲା ତା'ପାଇଁ।

ଆକ୍ୱାବାର ଘନନୀଳ, ସବୁଜ ରଂଗର ସମୁଦ୍ର। ହୋଟେଲ୍ ବାଲକୋନିରେ ବସି ସେ ଦେଖୁଛି, ଗଲଫ୍ ଅଫ୍ ଆକ୍ୱାବାର ଅପର ପାର୍ଶ୍ୱରେ ଇଜ୍‌ରାଇଲ୍‌ର ଇଲାଟ୍ ସହର। ସଲ୍‌ମାର ବିଶ୍ୱାସ ହୁଏ ନାହିଁ।

ପରେ ପରେ ଜେରସ୍, ପେଟ୍ରା, ଡେ଼ଡ୍-ସି କିଛି ବାଦ୍ ଯାଇନାହିଁ। ହମିଦ୍ ସାଥିରେ ବୁଲିବା ସମୟରେ ଦେଶ ଛାଡ଼ି ଆସିଥିବାର ଦୁଃଖ ମନକୁ ଆଣି ନାହିଁ ସେ। ପୃଥିବୀର ନିମ୍ନତମ ସ୍ଥାନ ଡେ଼ଡ୍-ସିର ସ୍ଥିର ଜଳରେ ଶୋଇ ଶୋଇ ପତ୍ରିକା ଖଣ୍ଡିକରେ ମନୋନିବେଶ କରିବାର ସ୍ମୃତି ସଲ୍‌ମାକୁ ପଛଦିନକୁ ନେଇଯାଇଥିଲା।

ସେଇ ମୁହୂର୍ତ୍ତରେ ହଠାତ୍ ବିସ୍ମୃତିର କୁହୁଡ଼ି ଆବୃତ୍ତ କରିଦେଲା ବର୍ତ୍ତମାନର ସମୟକୁ ଏବଂ ଦଶବର୍ଷ ତଳର ସମୟଟି ସ୍ଥିର ହୋଇ ରହିଥିଲା ଡେ଼ଡ୍-ସିର ଜଳରାଶି ମଧ୍ୟରେ, ନବେଦ୍ 'ନାବାଟିଆନ୍'ଙ୍କ ଭଗ୍ନ ରାଜଧାନୀ 'ପେଟ୍ରା'ର 'ସିକ୍' ବା ପାହାଡ଼ର ସେଇ ସଂକୀର୍ଣ୍ଣ ରାସ୍ତା ମଧ୍ୟରେ।

ସଲ୍‌ମା ପ୍ରକୃତିସ୍ଥ ହେଲା। ଗାଡ଼ିର ଗତି ବଢ଼ାଇଲା, ତଥାପି ଘର ପାଖ ରାସ୍ତା ଆସି ନାହିଁ। ତେବେ ଏ କେଉଁ ରାସ୍ତା ? ଅଭ୍ୟାସବଶତଃ ସେ ଚାଲି ଆସିଛି। ସାମ୍ନାରେ ହମିଦ୍‌ର କ୍ଲିନିକ୍। ସଲ୍‌ମା ଗାଡ଼ି ବୁଲେଇ ନେଲା।

ହମିଦ୍, ସଲ୍‌ମାଙ୍କ କ୍ଲିନିକ୍ ବେଶ୍ ଚାଲିଥିଲା ଏ ସହରରେ। ଦୁହିଁଙ୍କର ସୁଖ, ଆର୍ଥିକ ସ୍ୱଚ୍ଛଳତା ଈର୍ଷାର ବିଷୟ ହୋଇଥିଲା। କୋଳକୁ ଆସିଥିଲେ ଦେବ ଶିଶୁ ଦୁଇଟି।

ଆକସ୍ମିକ ଭାବରେ କିପରି ସବୁର ପରିବର୍ତ୍ତନ ହେଲା ତା' ଭାବି ହୁଏ ନାହିଁ।

ହମିଦ୍, ୱାଇଦାଙ୍କ ସଂପର୍କ କିଛି ଲୁଚାଛପା ନ ଥିଲା। ହମିଦ୍ କହେ, "ତୁମେ କିଛି ବୁଝନା, ସଲ୍‌ମା। ୱାଇଦା ଆସିଲେ ଆମର ଅସୁବିଧା କ'ଣ ହେବ ? ଏ ତ ନିହାତି ସାଧାରଣ କଥା।"

କଥାଟା ସହଜ କରିନେଇ ରୋହିତ୍ କହେ, "ଭାବି, ପ୍ରବ୍ଲେମ୍ କ'ଣ ? ଏଠି ଦେଖ ବହୁ ପରିବାରରେ ଏହିଭଳି ଚାଲିଛି। କିଛି ନୂଆ କଥା ନୁହେଁ। ତିନି, ଚାରୋଟି ପତ୍ନୀ। ହସ, ଖୁସିରେ ସମୟ କଟାଉଛନ୍ତି। ଅବଶ୍ୟ ୱାଇଦା ଆସିଲେ ହମିଦ୍‌ର କାର୍‌ର ଫ୍ରଣ୍ଟ୍ ସିଟ୍‌ଟି ତା' ପାଇଁ ବୁକ୍ ହେଇ ରହିବ।

ତମେ ପିଲାଛୁଆଙ୍କୁ ଧରି ପଛରେ ବସି ବୁଲିଯିବା କ'ଣ ଏତେ ବଡ଼ ସମସ୍ୟା ?''

ଦୁହିଁଙ୍କର ହସ, ଥଟ୍ଟାମଜ୍ଜା ଅସହ୍ୟ ହୋଇଥିଲା ସଲ୍‌ମାକୁ।

ସଂପର୍କର ଶେଷ ଦିନରେ ହମିଦ୍‌ର ସ୍ନେହପୂର୍ଣ୍ଣ କଥା କେତେ ପଦ।

''ସଲ୍‌ମା, ମୁଁ ତୁମକୁ ଭଲ ପାଏ, ଓ୍ୱାଇଦାକୁ ବି। ମୁଁ ଅନ୍ୟାୟ କରୁନାହିଁ। ଗୋଟିଏ ଛାତ ତଳେ ଆମେ ସମସ୍ତେ ଆନନ୍ଦରେ ରହିବା। ଥରଟିଏ ବୁଝିବାକୁ ଚେଷ୍ଟାକର।''

ସଲ୍‌ମା କାନରେ ହାତ ଚାପିଧରିଲା। ମନେ ମନେ ଉଚ୍ଚାରଣ କଲା, ''ବାସ୍ତବ ପ୍ରେମ, ଆଲ୍ଲାଙ୍କର ବରଦାନ। ମୁଁ ଭୁଲ୍ କରିଛି, ହମିଦ୍।''

ପରଦିନ ପ୍ରଭାତରେ –

ଦୁଃଖ, ଅପମାନ ଜର୍ଜରିତ ସଲ୍‌ମା ପିଲା ଦୁହିଁଙ୍କୁ ନେଇ ପାଞ୍ଚବର୍ଷର ଘରକରଣାକୁ ପଛରେ ପକେଇ ହମିଦ୍ ପାଖରୁ ଚାଲି ଆସିଥିଲା।

ସେମାନେ କେହି କାହାକୁ ଫେରି ଚାହିଁ ନାହାଁନ୍ତି। ସାନ ସାନ ପୁଅ, ଝିଅ ଦୁହିଁଙ୍କୁ ଖୋଜି ନାହିଁ ହମିଦ୍। ସଲ୍‌ମାର ଭଲ ମନ୍ଦ ବୁଝିବା ତ ଅନେକ ଦୂରର କଥା।

ଏବେ ଅନେକ ସମୟରେ ସେ ଅନୁଭବ କରେ କିଏ ଯେପରି ତାକୁ ଖୋଜି ହେଉଛି, ତା'ର ଅନ୍ତରାତ୍ମାରେ ସେ ଡ଼ାକ ଛୁଇଁ ଯାଉଛି! କେତେ କାତରତା, କେତେ ଅସହାୟତା ସେ ସ୍ୱରରେ! ସେମାନେ ତାକୁ ଅପେକ୍ଷା କରିଛନ୍ତି। ସେମାନଙ୍କ ଦୁଃଖ ବୁଝିବାରେ ସଲ୍‌ମା ହିଁ ସମର୍ଥ। ସେଇ ସମୟ ଆସିଛି। ଅଧିକ ବିଳମ୍ବ କରିବା ଠିକ୍ ହେବ ନାହିଁ। ସେମାନଙ୍କ ପାଇଁ କିଛି କରିପାରିଲେ, ତାହାହିଁ ହେବ ତା' ଜୀବନର ଚରମ ସାର୍ଥକତା!

କେତେ ଦିନ ଧରି ଯେଉଁ ମାନସିକ ଅସ୍ଥିରତା ତାକୁ ବିଚ଼ଳିତ କରୁଥିଲା, ତା'ର କୂଳ କିନାରା ଏବେ ମିଳିଯାଇଛି।

ଘରକୁ ଫେରିଲେ ପିଲାମାନେ ଧାଇଁ ଆସନ୍ତି, ''ମମି, ମମି, ଇଣ୍ଡିଆରୁ ଫୋନ୍ ଆସିଥିଲା। ଗ୍ରାଣ୍ଡମା, ଗ୍ରାଣ୍ଡପା କେତେ କଥା କହିଲେ। ତୁମେ ତୁମ ଅମ୍ମିଜାନ୍, ଅବ୍ବାଜାନ୍‌ଙ୍କୁ ଦେଖିବାକୁ ଯିବ ନାହିଁ? ଚାଲନା, ଆମେ ଇଣ୍ଡିଆ ଯିବା!''

ପିଲାମାନଙ୍କୁ ଚାହିଁ ରହେ ସଲ୍‌ମା। କିଛି କହିପାରେ ନାହିଁ। ଏବେ କିନ୍ତୁ ସେ ଉତ୍ତର ଖୋଜି ପାଇଛି।

ପିଲାଏ ଶୋଇ ଯାଇଥିବେ। ସକାଳେ ଯେତେବେଳେ ଗେହ୍ଲା ହେବାପାଇଁ ମା' କୋଳକୁ ପଶି ଆସିବେ, ସେଇ ସମୟରେ ଏ ଖୁସି ଖବରଟି ଜଣାଇ ଦେବ ସେ।

ସଲ୍‌ମାର ଆଖି ସଜଳ ହେଲା। ବିଦାୟ ମୁହୂର୍ତ୍ତ ଆସନ୍ନ। ବିଦାୟ ଜୋର୍ଡ଼ାନ୍। ବିଦାୟ ପ୍ରିୟ ସହର ଅମାନ୍। ଗାଡ଼ିର ଗତି ଶୀଥିଳ ହେଉଛି। କାର୍ ଷ୍ଟେରିଓରେ କେଉଁ ଏକ ବିଦେଶୀ ରେଡ଼ିଓ ଷ୍ଟେସନରେ ଗାୟିକା କଣ୍ଠର ଲାଳିତାପୂର୍ଣ୍ଣ ସ୍ୱର, 'ଲିଭ୍ ମି ଏଲୋନ୍ ଓ ଲଭ୍! ଲିଭ୍ ମି ଏଲୋନ୍..।'

କ୍ରମାଗତ ଭାବେ ଝିଅଟି ସେଇ ପଦଟି ଗାଇ ଚାଲିଥିଲା। ନିଶୁନ୍ ରାସ୍ତା, ନିସ୍ତବ୍ଧ ସହର ତା' ଶୁଣୁଥିଲେ। ସଲ୍‌ମାର ଆଖିରୁ ଲୁହ ଝରୁଥିଲା।

□ □

# ଲିପ୍‌ସା

ଲିପ୍‌ସା ବସ୍‌ରୁ ଓହ୍ଲେଇ ତରତରରେ ଫାଟକ ଖୋଲି ବଗିଚା ଭିତରେ ଏକପ୍ରକାର ଦୌଡ଼ିବାରେ ଲାଗିଲା। ସୋମ୍ କାନ୍ଦୁଚି; ଦୁଇବର୍ଷର ପିଲାଟା ଗାହାଧରି ଏମିତି ବିକଳ ହେଇ କାନ୍ଦୁଛି କାହିଁକି ? ଖେଳୁ ଖେଳୁ ପଡ଼ିଗଲା କି ? କ'ଣ ହେଲା ତା'ର ?

ଛିଦ୍‌କରି ଘାସରେ ଗଡ଼ିଯାଉଛି ସୋମ୍। ମଧ୍ୟବୟସ୍କା ଆୟାଟି ବୁଝେଇ ବୁଝେଇ ଥକି ଗଲାଣି।

– କ'ଣ ହେଲା ସାବିତ୍ରୀ ? ସେ କାନ୍ଦୁଚି କାହିଁକି ?

– କିଛି ନାହିଁ ମେମ୍‌ସାବ୍। କ୍ଷୀର ପିଇବେ ନାହିଁ। ଏବେ ରାସ୍ତାରେ ବୁଲିବେ।

ସାବିତ୍ରୀର ଉତ୍ତରରେ ଲିପ୍‌ସା ଆଶ୍ୱସ୍ତ ହେଲା।

ପିଲାକୁ ଫାଟକ ବାହାରକୁ ବୁଲେଇ ନେବା ମନା। ଅଥଚ ଯାହା ମନ ହେବ ସେଇକଥା ଜିଦ୍ କରିବସିବ ସୋମ୍। ସାବିତ୍ରୀ ବହୁଆଡୁ ବହୁପ୍ରକାର କଥା କହି, ଗଛରେ ଚଢ଼େଇ, ଫୁଲ ପାଖରେ ଉଡୁଥିବା ପ୍ରଜାପତି ଦେଖେଇ ତାକୁ ଭୁଲେଇବାରେ ଲାଗିଛି। ସୋମ୍ ବୁଝୁ ନାହିଁ।

ଲିପ୍‌ସା ତାକୁ କାଖେଇ ନେଇ ପଚାରିଲା, "ବୁଲିଯିବା ? ପାର୍କ ଯିବୁ ?" ସୋମ୍‌ର କାନ୍ଦ ବନ୍ଦ ହେଲା।

ମୁହଁ ହାତ ଧୋଇବା, ଚା' ପିଇବା ହେଇ ପାରିଲା ନାହିଁ। ସୋମ୍‌କୁ ନେଇ ପାର୍କକୁ ଚାଲିଲା ଲିପ୍‌ସା। ବୁଲିଯିବା ଆଶାରେ ମା' ହାତରେ କ୍ଷୀର ଗ୍ଲାସ୍‌ଟା ଖୁବ୍ ଶୀଘ୍ର ପିଇଦେଲା ସୋମ୍।

ପାହାଡ଼ିଆ ସହରଟି ଖୁବ୍ ସୁନ୍ଦର, କଂପାନୀର କେତେକ କାର୍ଯ୍ୟ ହେତୁ ସିଦ୍ଧାନ୍ତର ବିଶେଷ ନିଯୁକ୍ତି ଏବେ ଏଠାରେ ହୋଇଛି। ନୂଆ ସ୍ଥାନ। ସିଦ୍ଧାନ୍ତର ପଦୋନ୍ନତି ପରେ ଅନ୍ୟାନ୍ୟ ସୁବିଧା ବି ରହିଛି। ତେବେ ପ୍ରାଇଭେଟ୍ ସେକ୍ଟର୍‌ରେ କାମ ଅଧିକ। ବିଶେଷ କରି ସର୍ବୋଚ୍ଚ ଅଫିସର୍ ହୋଇଥିବାରୁ ଦାୟିତ୍ୱ ମଧ ଖୁବ୍ ବେଶୀ। ଲିପ୍‌ସା ଏସବୁ ବୁଝେ। କିଛି କହିପାରେ ନାହିଁ। ଘରକଥା ବୁଝିବାକୁ ସିଦ୍ଧାନ୍ତ ସମୟ କରିପାରେ ନାହିଁ। ସନ୍ଧ୍ୟାରେ ଲିପ୍‌ସା ପାଖରେ ବସି ଖୁସିଗପ କରିବାକୁ କ୍ୱଚିତ୍ ସୁଯୋଗ ଆସେ। ତେବେ ସିଦ୍ଧାନ୍ତର ସ୍ତ୍ରୀ, ପୁଅ, ବାପା, ମା'ଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟ ଯୋଗାଇ ଦେବାରେ କଂପାନୀର କାର୍ପଣ୍ୟ ନାହିଁ।

ଆଧୁନିକ ରାଜପ୍ରାସାଦ ଭଳି ସୁନ୍ଦର ଘର। କାମ କରିବା ପାଇଁ କେତୋଟି ଲୋକ। କିନ୍ତୁ ସବୁର ସୁବନ୍ଦୋବସ୍ତ ସତ୍ତ୍ୱେ ସୋମ୍‌କୁ କେହି ଭୁଲେଇ ବୁଝେଇ ରଖି ପାରନ୍ତି ନାହିଁ। ଲିପ୍‌ସା ପାଇଁ ସେଇ ବଡ଼ ସମସ୍ୟା।

ସିଦ୍ଧାନ୍ତର ଉଚ୍ଚପଦବୀ, ଚାକିରିର ଏତେସବୁ ଲୋଭନୀୟ ସୁବିଧା ସୁଯୋଗ ସତ୍ତ୍ୱେ ଲିପ୍‌ସାର ଅଧ୍ୟାପିକା ଚାକିରିଟିର ଆବଶ୍ୟକତା କେତେ ବେଶୀ ? କେତେଟା ଟଙ୍କା ଅବା ମାସରେ ସେ ପାଏ ? ନା– ସମୟ ବିତାଇବାର ଏ ଏକ ଅପୂର୍ବ ପନ୍ଥା। ତାହା ହିଁ ଭାବି ସେ ଯୋଗ ଦେଇଥିଲା ସ୍ଥାନୀୟ କଲେଜରେ।

ତେବେ ସୋମ୍‌ର ଜନ୍ମପରେ ଥରଟିଏ ପାଇଁ ସିଦ୍ଧାନ୍ତ ତାକୁ କହି ନାହିଁ, 'ଏବେ ଏ ଚାକିରି ଛାଡ଼।'

ଲିପ୍‌ସା ବି ପଚାରି ନାହିଁ, 'କ'ଣ କରିବି କହ ତ ?'

ସିଦ୍ଧାନ୍ତ ଜାଣିଛି, ଲିପ୍‌ସା ଚିନ୍ତାକରେ, ବିଚାର କରିପାରେ। ଘର ଚଳାଇବାରେ, ଭବିଷ୍ୟତ ପାଇଁ, ପରିବାରର ପ୍ରତ୍ୟେକଙ୍କୁ ସୁସ୍ଥ ରଖିବା ପାଇଁ କେତେ ଯୋଜନା କରିବସେ।

ବିବାହର ତିନିବର୍ଷ ପରେ ସୋମ୍‌ର ଜନ୍ମ; ପିଲାଟି ପାଇଁ ତା' ବ୍ୟତୀତ ଅଧିକ କିଏ ଭାବିପାରିବ ? ଅନ୍ୟ କେତେଜଣ ସାଧାରଣ ଝିଅଙ୍କ ସହ ଲିପ୍‌ସାକୁ ତୁଳନା କରାଯାଇପାରେ ନାହିଁ। ସୌନ୍ଦର୍ଯ୍ୟ, ରୁଚି, ଶିକ୍ଷା, ବୁଦ୍ଧିମତ୍ତା ଏକାଧାରରେ ସବୁ ସଦ୍‌ଗୁଣର ଅଧିକାରୀ ଲିପ୍‌ସା। ତେଣୁ ସିଦ୍ଧାନ୍ତ ଏସବୁ ନିଷ୍ପତ୍ତି ହୁଏତ ତା' ଉପରେ ଛାଡ଼ି ଦେଇ ନିଶ୍ଚିନ୍ତ ହୋଇଛି।

ଅଚାନକ ଅଫିସରୁ ଫେରି ଆସି ସିଦ୍ଧାନ୍ତ ସୁଖର ବାର୍ତ୍ତା ଶୁଣାଇଥିଲା ଲିପ୍‌ସାକୁ,

''ସେମାନେ ଆସୁଛନ୍ତି। ବାପା ଆଜି ଟେଲିଫୋନ୍ କରିଥିଲେ !''

–ତୋ ଚିଠି ପାଇ ବିଚାର କଲି। ଚାକିରି କାଳ ଶେଷ ହେଲା। ଏତେ ଦିନ ଶିକ୍ଷକତା କରିବା ପରେ ଏବେ ଆରାମରେ ବସିବାର ସମୟ ଆସିଛି। ତେଣୁ ତୋ ପାଖରେ ରହିବାରେ ଆପତ୍ତି କରିବି କାହିଁକି ?

ତେବେ ପ୍ରଥମେ ତ ସେ ଆଦୌ ରାଜି ନଥିଲେ। ଝିଅମାନେ ବାହାହୋଇ ଯାଇଥିଲେ। ଯାହା କିଛି ଋଣ କରିଥିଲେ, ପୁଅକୁ ପଢ଼ାଇବା, ପିଲା ତିନୋଟିଙ୍କ ବିବାହ ସମୟରେ। ଚାକିରି ଶେଷ ପରେ ପାଇଥିବା ଅର୍ଥରେ ସବୁ ସୁଝିଗଲା।

ପୁଅ, ବୋହୂ ଘରକୁ ଆସିଥିବାବେଳେ ଋଣ ସୁଝିଯିବା ବିଷୟଟି କହି ଅନିରୁଦ୍ଧ ଆଶ୍ୱସ୍ତ ହୋଇଥିଲେ। ଖୁସିରେ ସିଦ୍ଧାନ୍ତକୁ କହିଥିଲେ।

''ତୋ ପାଇଁ ଋଣ ରହିଯିବ, ଏହି ଆଶଙ୍କା ମୁଁ ବରାବର କରିଛି। ଯାହା ହେଉ ସେ ଚିନ୍ତା ଆଉ ନାହିଁ।''

''ବାପା, କେତେ ବା ଟଙ୍କା ? ଏଇଥିପାଇଁ ଚିନ୍ତା କରୁଥିଲ ?'' ସିଦ୍ଧାନ୍ତ ବ୍ୟସ୍ତ ହେଲା। ପୁଣି କହିଲା, ''ଏବେ ଚାଲ ଆମ ସାଙ୍ଗେ। ଏଠି ଏକା ଏକା କାହିଁକି ରହିବ ?''

''ଆଉ କିଛିଦିନ ଯାଉ। ତରତର କାହିଁକି ? ଯିବି ତ ନିଶ୍ଚୟ।'' ଅନିରୁଦ୍ଧ ସ୍ନେହରେ କହିଲେ।

ଲିପ୍‌ସା ବିଶ୍ୱାସ କରି ପାରୁ ନ ଥିଲା। ଶ୍ୱଶୁର କେତେଥର କହିଛନ୍ତି, ''ତୋ ବୋଉ କ'ଣ କହେ, ମୁଁ ବୁଝେ ନାହିଁ। ଏବେ ଯିବା ବିଷୟରେ କ'ଣ ଭାବୁଛି ସେ ଦେଖ।''

ଅଳ୍ପ କଥା କହୁଥିବା କୌଶଲ୍ୟାଙ୍କୁ ଲିପ୍‌ସା କିଛି ପଚାରି ପାରେ ନାହିଁ ସାହସ କରି। ପଚାରିପାରେ ନାହିଁ, 'ଆପଣ କ'ଣ ଚାହୁଁଛନ୍ତି ବୋଉ ? ମୋତେ କୁହନ୍ତୁ।'

ତାଙ୍କୁ ଦେଖିଲେ ମନେହୁଏ ସେ ଯେମିତି କିଛି ଚିନ୍ତାରେ ପଡ଼ିଯାଇଛନ୍ତି। ରାସ୍ତା ଖୋଜି ଖୋଜି ଥକି ପଡୁଛନ୍ତି। ତାଙ୍କର ସ୍ନେହ, ଶ୍ରଦ୍ଧା, ଘର କଥା ବୁଝିବା ସବୁ ଯେପରି ଯନ୍ତ୍ରଚାଳିତ। କରିବାକୁ ହେବ, କରୁଛି; ମନ କିନ୍ତୁ ଅନ୍ୟ ଆଡ଼େ। ଲିପ୍‌ସାକୁ ସ୍ନେହ କରନ୍ତି କୌଶଲ୍ୟା। ତଥାପି ଶାଶୁଙ୍କ ପାଖରେ ସେ ସହଜ ହେଇ ପାରେନାହିଁ। ପ୍ରତିଥର ସିଦ୍ଧାନ୍ତ, ଲିପ୍‌ସା ଆସିଲେ ସେମାନଙ୍କୁ

ନେଇ ଯିବା କଥା ଉଠେ। ଅନିରୁଦ୍ଧ କହନ୍ତି, ‘‘ତୁମ ବୋଉ, ମୁଁ ଆମେ ଦୁଇଜଣ। ଏଇ ଛୋଟ ଘରଖଣ୍ଡିକରେ ଚଳି ପାରିବୁନି ?’’

ଘର ତ ଇଟା, ଚୁନ, ବାଲି ସିମେଣ୍ଟରେ ତିଆରି କୋଠରୀ କେତୋଟି ନୁହଁ, ବା ଦ୍ୱିତଳ ପ୍ରାସାଦ କିମ୍ବା ତା’ଠାରୁ ବିଶାଳ ନୁହେଁ। ସେପରି ମାପ କ’ଣ କରାଯାଇପାରେ ? ସଂସାର, ପରିବାର ଚଳାଉଥିବା ବ୍ୟକ୍ତିଟି ସଂପର୍କରେ କହିବାକୁ ଯାଇ ତା’ ସଂସାରକୁ ଘରର ଆଖ୍ୟା ଦିଆଯାଏ।

ଝିଅ, ଜ୍ୱାଇଁ, ବନ୍ଧୁ, ଅତିଥିମାନଙ୍କ ଯିବା ଆସିବା ନିଶ୍ଚିତ ଲାଗି ରହିଥାଏ ସେଭଳି ଘରଟିରେ। ଦାୟିତ୍ୱ ନେଇ ଚଳାଇବାରେ କୌଶଲ୍ୟା ମନ ଦେଇ ପାରନ୍ତି ନାହିଁ। ଅନିରୁଦ୍ଧ ତା’ ବୁଝିପାରନ୍ତି।

କେବେ କେବେ କୌଶଲ୍ୟା କହନ୍ତି, ‘‘ଖୁବ୍ ହେଲା, ଚାଲ ତ ଅରଣ୍ୟରେ ବସିବା। ଏ ସବୁ ଭଲ ଲାଗୁ ନାହିଁ।’’

‘‘ତା’ ଠିକ୍, କିନ୍ତୁ ଏକା ଏକା କ’ଣ କରିବା ଆମେ ? ସିଦ୍ଧାନ୍ତ ପାଖରେ ରହିବା ଚାଲ। କିଛି ଦାୟିତ୍ୱ ନାହିଁ ତୁମର। ଯାହା ଚାହିଁବ କରିବ।’’

କୌଶଲ୍ୟା ଆନମନା ହୁଅନ୍ତି। କ’ଣ ଚିନ୍ତା କରି ନିରାଶ ହୋଇ ଶୂନ୍ୟକୁ ଚାହିଁ ରହନ୍ତି। ଅନିରୁଦ୍ଧଙ୍କୁ କିଛି ବୁଝାଇ ପାରନ୍ତି ନାହିଁ।

କେବେ କେବେ ଅନିରୁଦ୍ଧ ପଚାରନ୍ତି, ‘‘କ’ଣ ଏତେ ବେଶୀ ଭାବୁଚ ? ସିଦ୍ଧାନ୍ତର ଘର ହିଁ ଆଶ୍ରୟସ୍ଥଳ ଆମ ପାଇଁ। ‘ଆଶ୍ରୟ’ ଶବ୍ଦଟା ଅବଶ୍ୟ ଠିକ୍ ହଉ ନାହିଁ। ସେ ଆମ ପୁଅ। ତା’ ଘର ତ ଆମଘର। ନୁହେଁ କି ?’’

କୌଶଲ୍ୟା ହସିପକାନ୍ତି, ‘‘ନିଜେ କହୁଚ, ନିଜେ ଭ୍ରମ ସଂଶୋଧନ କରୁଚ। ଆଶ୍ରୟ ନିଅ ବା ନିଜଘରେ ରହ, ସବୁ ତ ସେଇ ଜଞ୍ଜାଳ। ଚାଲ ଅନ୍ୟ ଭାବରେ ବଞ୍ଚିବା।’’

କୌଶଲ୍ୟା ଚିରକାଳ ଏମିତି। ସେ ଯୁଗରେ କଲେଜରେ ଶିକ୍ଷା ସମାପ୍ତ କରି ସେ ଅନିରୁଦ୍ଧଙ୍କୁ ବିବାହ କରିଥିଲେ। ସ୍ୱାମୀ, ପିଲା ତିନୋଟିଙ୍କୁ ନେଇ ସେ ଅସୁଖୀ ହେବାର ଦେଖି ନାହାନ୍ତି ଅନିରୁଦ୍ଧ। ଏବେ କିନ୍ତୁ ସେ ପକ୍ଷ ମେଲାଇ ଉଡ଼ିଯିବାକୁ ଚାହାଁନ୍ତି ଅନ୍ୟ କେଉଁଆଡ଼େ। ହୁଏତ ଦାୟିତ୍ୱର ବେଢ଼ି ନ ଥିଲେ ମଣିଷର ମନ ଲଗାମଛଡ଼ା ହୁଏ। ତେବେ ବୟସର ସଚେତନତା ରହିବା ଆବଶ୍ୟକ।

ସିଦ୍ଧାନ୍ତର ପୁଅ ସୋମ୍‌କୁ ଦେଖିଲେ କୌଶଲ୍ୟାଙ୍କ ମନ ଏଭଳି ଉଦ୍ଧାମ ହେବ ନାହିଁ– ଅନିରୁଦ୍ଧ ମନେ ମନେ ଯୁକ୍ତି କଲେ। ସବୁ ଦୃଷ୍ଟିରୁ ଚିନ୍ତାକରି ସେ ସିଦ୍ଧାନ୍ତକୁ ଫୋନ୍ କଲେ। ଲିପ୍‌ସାର ଆନନ୍ଦ ଉଚ୍ଛୁଳି ଉଠିଥିଲା। କୌଶଲ୍ୟାଙ୍କୁ ସେ ଖୁବ୍ ଚାହୁଁଥିଲା ପୁଅ ସୋମ୍ ପାଇଁ। ସେ ଜାଣିଥିଲା ଶାଶୁ ଆସିଲେ ଏ ଘରର ସମସ୍ତ ଦାୟିତ୍ୱ ନିଜ ହାତକୁ ନେବେ। ଦୁଇବର୍ଷର ସୋମ୍ ହେବ ତାଙ୍କ ପୁଅ। କେବେ କେବେ କଲେଜରୁ ଛୁଟୀ ନେଇ ସେ ସିଦ୍ଧାନ୍ତ ସଙ୍ଗେ ବମ୍ବେ, ଦିଲ୍ଲୀ, ହିଲ୍ ଷ୍ଟେସନ ଯାଇପାରିବ। ସିଦ୍ଧାନ୍ତକୁ ପ୍ରାୟ ଦୁଇ ମାସରେ ଥରେ ଦିଲ୍ଲୀ ବା ବମ୍ବେ ଯିବାକୁ ହୁଏ।

ଶାଶୁ, ଶ୍ୱଶୁରଙ୍କୁ ନେଇ ଏମିତି କେତେ ତା'ର କଳ୍ପନା ! ଏବେ ଅଥଚ ସବୁ ବିପରୀତ !

ଅନିରୁଦ୍ଧ ଶିକ୍ଷକତା ଛାଡ଼ିଛନ୍ତି, କିନ୍ତୁ ବନ୍ଧୁପ୍ରିୟ ହୋଇଥିବାରୁ ଏ ସହରକୁ ଆସି ଅନ୍ତରଙ୍ଗ ବନ୍ଧୁ କେତେଜଣଙ୍କୁ ସଂଗ୍ରହ କରିନେଇଛନ୍ତି। ସେମାନଙ୍କ ସହ ସକାଳ ସନ୍ଧ୍ୟାରେ ଖୋଲାରାସ୍ତାରେ ବୁଲିବା, ସେମାନଙ୍କୁ ଡ଼ାକି ଚା' ବିସ୍କୁଟ ଖୁଆଇବା, ଶୀତଋତୁର ଆମୋଦଦାୟକ ଦ୍ୱିପହରେ କ୍ଲବ୍‌ରେ ବସି ବ୍ରିଜ୍ ଖେଳିବାରେ କେବେ କେବେ ମଧ୍ୟାହ୍ନ ଭୋଜନର ସମୟ ସେ ଭୁଲି ଯାଆନ୍ତି।

ଖୁବ୍ ସକାଳୁ ଉଠି ନିଜକୁ ପ୍ରସ୍ତୁତ କରି କୌଶଲ୍ୟା ବଗିଚାର ସାମନା ରାସ୍ତାରେ କିଛି ସମୟ ବୁଲନ୍ତି। ନିଜ ପାଇଁ ଚା' ତିଆରି କରି ପଢ଼ିବା ଟେବୁଲ ପାଖରେ ବସି ବେଶ୍ ଦୁଇଘଣ୍ଟାରୁ ଅଢ଼େଇ ଘଣ୍ଟା ପଢ଼ାପଢ଼ି କରନ୍ତି। ସିଦ୍ଧାନ୍ତର ଘରେ ବହି, ପତ୍ରପତ୍ରିକା, ଦୈନିକ ସଂବାଦପତ୍ରର ଅଭାବ ନାହିଁ। ତଥାପି ଏ ସହରରେ ଥିବା କେତୋଟି ଲାଇବ୍ରେରୀରେ ନିଜକୁ ମେମ୍ବର କରାଇ ନୂଆ ନୂଆ ବହି ପଢ଼ି ଶେଷ କରିବା ତାଙ୍କର ସୌଖୀନ ମନୋବୃତ୍ତିରେ ପରିଣତ ହୋଇଛି।

ଗାଧୋଇ ସାରି ସକାଳ ଜଳଖିଆ ଖାଇବା ପରେ କୁଆଡ଼େ ଯାଆନ୍ତି କୌଶଲ୍ୟା, କେହି ତାଙ୍କୁ ପଚାରି ନାହାଁନ୍ତି। କାହାର ବା ଏ ଘରେ ସମୟ ଥାଏ ? ନିଜ ନିଜର ବ୍ୟସ୍ତତା ତ ରହିଛି। ପ୍ରାୟ ସକାଳେ ଜଳଖିଆ ଖାଇବା, ଦ୍ୱିପ୍ରହର ଖାଇବା ଏବଂ ରାତିରେ ସେମାନେ ଚାରିଜଣ ଖାଇବା ଟେବୁଲ୍ ପାଖରେ ଏକାଠି ହୁଅନ୍ତି।

ଅଫିସ୍‌ରେ ଏତେ ବେଶୀ ସମୟ କାମ କରି ମଧ୍ୟ କ୍ଲାନ୍ତ ହୁଏ ନାହିଁ ସିଦ୍ଧାନ୍ତ। ବାପା, ମା'ଙ୍କୁ ପାଖରେ ପାଇଥିବାରୁ ସେ ଯେମିତି ଫେରିଯାଏ ପଛଦିନକୁ।

କୌଶଲ୍ୟାଙ୍କ ସଂପର୍କରେ ଚିନ୍ତାକରେ ଲିପ୍‌ସା। କି ପ୍ରକାର ବ୍ୟସ୍ତତା ତାଙ୍କୁ ଘେରି ରହେ ଏଠି? ଏଇ ଅଳ୍ପ କେତୋଟି ଦିନରେ କାହାକୁ ବା ଚିହ୍ନିଲେ ସେ ଏ ସହରରେ?

କେବେ କେବେ ଅନିରୁଦ୍ଧ, କୌଶଲ୍ୟା ବଗିଚାରେ ବୁଲିବା ସମୟରେ ଲନ୍‌ରେ ବସି ସହଜ ଭାବରେ ଆଳାପ କରନ୍ତି। ଲିପ୍‌ସା କଲେଜରୁ ଫେରି ଆସିଲେ ତାକୁ ମଧ୍ୟ ପାଖକୁ ଡ଼ାକାଇ ପଠାନ୍ତି। ଅଥଚ ସେମାନଙ୍କ କଥାବାର୍ତ୍ତା ମଧ୍ୟରେ ଏସବୁ କଥା କେବେ ଉଠେ ନାହିଁ। କେହି କାହାକୁ ଅଭିଯୁକ୍ତ କରେ ନାହିଁ। ଦୋଷ, ଗୁଣ ଦର୍ଶାଇ ଠିକ୍ ଭୁଲ ଦେଖାଇ ଦିଏ ନାହିଁ। ଯିଏ ଯାହା ସ୍ୱଭାବରେ ମାର୍ଜିତ ରୁଚିର ପରିଚୟ ଦିଅନ୍ତି।

ଲିପ୍‌ସା କଲେଜ ଯାଏ, କ୍ଲାସ୍ ନିଏ, ଛାତ୍ରଛାତ୍ରୀଙ୍କୁ ପଢ଼ାଏ। ଅଥଚ ମନ ରହିଥାଏ ଘରେ, ଦୁଇବର୍ଷର ସୋମ୍ ପାଖରେ। କ୍ଲାସ୍ ଶେଷ ହେବା ପରେ ପରେ ଧାଇଁ ଆସେ ସେ ବାହାରକୁ। ଗାଡ଼ିନେଇ ଡ୍ରାଇଭର୍ ଅପେକ୍ଷା କରିଥାଏ। ଗାଡ଼ି ନ ଆସି ପାରିଲେ କଲେଜ ବସ୍‌କୁ ଅପେକ୍ଷା କରେ ସେ।

କଲେଜରେ କ୍ଲାସ୍ ସାରି ଘରକୁ ଫେରିବା ପର୍ଯ୍ୟନ୍ତ ସେ ଅଣନିଃଶ୍ୱାସୀ ହୋଇ ଉଠେ। କମନ୍ ରୁମ୍‌ରେ ବସି ସାଥି ଅଧ୍ୟାପିକାମାନଙ୍କ ସହ ସୁଖ ଦୁଃଖ ହେବାପାଇଁ ସମୟ କାହିଁ?

ଅରୁନ୍ଧତୀ, ସୌମ୍ୟା କଥାବାର୍ତ୍ତା କରୁଥିଲେ। ''ସାନ ପିଲାମାନଙ୍କୁ ନେଇ ଖୁବ୍ ହଇରାଣ। ଦିନେ ଦୁଇଦିନ ଛୁଟୀ ହେଲେ ଘରେ ମୋତେ ପାଗଳ ହେବାପରି ଲାଗେ।''

''ଭଲ ମା' ହେଇଛୁ!'' ହସି ହସି କହିଲା ସୌମ୍ୟା।

''ମା' ହେଲି ତ ଝଂଝାଳରେ ପଡ଼ିବି କାହିଁକି? ସେ କାମ ମୋ ଶାଶୁ, ଶ୍ୱଶୁରଙ୍କର। ଏ ବୟସରେ ବସି ବସି କ'ଣ କରନ୍ତେ କି? ତା' ତ ସେମାନଙ୍କର ରିକ୍ରିୟେସନ।'' ଅରୁନ୍ଧତୀର ଉତ୍ତର ଶୁଣି ଅନ୍ୟମାନେ ଖୁବ୍ ହସିଲେ।

ସୌମ୍ୟା କହିଲା, ''ମୁଁ ତ ମୋ ଦୁଇପିଲାଙ୍କୁ ଶାଶୁ, ଶ୍ୱଶୁରଙ୍କୁ ଦେଇଦେଇଛି। ପୁଅ, ଝିଅ ଦୁହେଁ ମୋତେ ଖୋଜନ୍ତି ନାହିଁ। ଶ୍ୱଶୁରଙ୍କ ବୟସ ଚଉରାଶୀ।

ଅଥଚ ପିଲା ଦୁହିଁଙ୍କୁ ରାତି ସାତରୁ ରାତି ଦଶଟା ପର୍ଯ୍ୟନ୍ତ ପଢ଼େଇ ବସନ୍ତି। ଶାଶୁ ତ ଘର ସଂଭାଳିବାରେ ଓସ୍ତାଦ୍। ଶ୍ୱଶୁରଙ୍କଠୁଁ ବାର ବର୍ଷ ସାନ ବୟସରେ, ବେଶ୍ ଶକ୍ତି ତାଙ୍କ ଦେହ ମନରେ। ପରିବା କାଟିବା, ରାନ୍ଧିବା ଲୋକ ଥିଲେ ବି ନିଜେ ପୁଅ ମନଲାଖି ତରକାରୀ, ସ୍ୱାଦିଷ୍ଟ ଜଳଖିଆ ତିଆରି କରିବାରେ ମନ ଲଗାନ୍ତି। ରୋଷେଇ ବତାଇବା, ଘର ଚଳାଇବା କିଏ ତାଙ୍କଠାରୁ ଶିଖିବା କଥା।''

କ୍ଲାସ୍ ସରିଛି। ସେମାନଙ୍କର ଘରକୁ ଫେରିବା ପାଇଁ ବ୍ୟସ୍ତତା ନାହିଁ! ପିଅନ୍‌କୁ ପଠାହୋଇ ମଗା ହେଇ ଆସୁଛି ଗରମ ବରା, ପିଆଜି, ଚା' କଫି, କୋଲ୍ଡ଼ ଡ୍ରିଙ୍କ୍ସ।

କଲେଜରେ ପାଠ ପଢ଼େଇବାକୁ ଆସିଛନ୍ତି ନା ପିକ୍‌ନିକ୍ କରିବାକୁ?

ଲିପ୍ସା ବିରକ୍ତ ହେଲେ ବି ମନର କୋଉ କୋଣରେ ତା'ର ବିଷଣ୍ଣତା ଛାଇଯାଏ। ସବୁ ପ୍ରକାର ସୁଖ ସୁବିଧା ଥାଇ ସେ ଖୁସି ହୋଇପାରୁନି କାହିଁକି?

ନିଜକୁ ଏଇ ପ୍ରଶ୍ନ ପଚାରି ସେ ଉତ୍ତର ଖୋଜି ପାଏନାହିଁ। ସନ୍ଧ୍ୟାରେ ସିଦ୍ଧାନ୍ତର ହସଖୁସିର ନିଶ୍ଚିନ୍ତ ଚେହେରା ଦେଖି ସେ ସାରାଦିନର କ୍ଲାନ୍ତି ପୋଛି ଦିଏ।

ମା', ପୁଅଙ୍କର ବିଳମ୍ବ ରାତି ପର୍ଯ୍ୟନ୍ତ ଅନେକ ବିଷୟରେ କଥାବାର୍ତ୍ତା ଚାଲେ। ଦେଶ, ବିଦେଶଠାରୁ ଆରମ୍ଭ କରି ସିଦ୍ଧାନ୍ତର ଅଫିସ୍ କାମ ପର୍ଯ୍ୟନ୍ତ। ଲିପ୍ସାକୁ ସିଦ୍ଧାନ୍ତ ବାଧ କଲେ ବି ଅଧିକ ସମୟ ସେ ବସି ପାରେ ନାହିଁ। ଅନିରୁଦ୍ଧଙ୍କର ରାତ୍ରି ଖାଇବା ପରେ କଥାବାର୍ତ୍ତା କରିବାର ଅଭ୍ୟାସ କେବେ ବି ନ ଥିଲା।

କୌଶଲ୍ୟା କିନ୍ତୁ ଅପେକ୍ଷା କରିଥାଆନ୍ତି ସିଦ୍ଧାନ୍ତକୁ। ପୁଅସହ ଭଲରେ କଥାବାର୍ତ୍ତା ନ କରିବା ପର୍ଯ୍ୟନ୍ତ ସେ ଶୋଇ ପାରନ୍ତି ନାହିଁ। ସିଦ୍ଧାନ୍ତ କହେ, ''କାଲି ଛୁଟୀ ଅଛି। ଶୋଇବାକୁ ବ୍ୟସ୍ତ କାହିଁକି?'' ଲିପ୍ସାର ଆଖି ନିଦରେ ମାଡ଼ି ହୋଇଯାଏ। ସେ 'ପୁଅ ଉଠିବ' କହି ବିଛଣାକୁ ଯାଏ। ମା' ସହ କଥାବାର୍ତ୍ତା ପରେ ବହି ପଢ଼ିବା, ଟି.ଭି. ଦେଖିବା, ଏମିତି କେତେକାମ ବାକିଥାଏ ସିଦ୍ଧାନ୍ତର।

ସକାଳେ ଉଠିବାରେ ତା'ର ବିଳମ୍ବ ହୁଏ। ସେମିତି ବିଛଣାରେ ଶୋଇ ସେ ପାଟିକରେ, ''ଲିପ୍ସା... ଚା'। ତୁମେ ସବୁ ମୋତେ ଅପେକ୍ଷା କରନା।

ବ୍ରେକ୍‌ଫାଷ୍ଟ ଡେରିରେ ଖାଇବି। ଦିନଟିଏ ନ ଗାଧୋଇଲେ କ୍ଷତି କ'ଣ ?''

''ବୋଉ ଫେରି ଆସିଲେଣି। କି ସୁନ୍ଦର ଖେଳଉଛନ୍ତି ସୋମ୍‌କୁ। ଆୟାଟା ପାଖରେ ସବୁବେଳେ କାନ୍ଦୁଛି ସେ।''

''ପିଲାମାନେ ନିଜର ଲୋକଙ୍କୁ ଅଧିକ ବୁଝନ୍ତି।'' ଖବର କାଗଜରୁ ମୁହଁ ନ ଉଠାଇ ସିଦ୍ଧାନ୍ତ ଉତ୍ତର ଦିଏ।

କୌଶଲ୍ୟା ବାହାରୁ ଆସିଲେ। ସିଦ୍ଧାନ୍ତ ଜାଣିଲା ଅଥଚ ପଚାରିଲା ନାହିଁ, 'ବୋଉ ସକାଳୁ ଏତେ ସମୟ କୁଆଡ଼େ ଯାଇଥିଲୁ ? ଏବେ ଫେରୁଛୁ।'

ଲିପ୍‌ସା ସେତିକିବେଳେ ଉତ୍ତର ଦେଇ ପାରନ୍ତା, 'ଆଜି ତ ଶୀଘ୍ର ଆସିଛନ୍ତି। ନଚେତ୍ ଦିନ ଦୁଇଟା ବାଜିଯାଏ ତାଙ୍କର।'

ନିଜକୁ ଭର୍ତ୍ସନା କଲା ଲିପ୍‌ସା। କାହାକୁ ନେଇ କ'ଣ ସେ ଭାବି ହେଉଛି ଏତେ ବେଳ ? ଠିକ୍ ହେଉନି; ଏସବୁ ଭଲ କଥା ନୁହେଁ। ତା'ର ଚାକିରି କରିବା ନେଇ ଯାବତୀୟ ବାଜେ ଚିନ୍ତା।

ପିଲାଟା ଦିନସାରା ଏକା ଏକା। ଘରର ପ୍ରତ୍ୟେକେ ନିଜ ନିଜ ଇଚ୍ଛାର ରାସ୍ତା ଧରି ଚାଲିଛନ୍ତି। ସେ ଦୋଷରୁ ଲିପ୍‌ସା ବି ମୁକ୍ତ ନୁହଁ।

ଆହା, ପିଲାଟି କି ବିକଳ ହେଇ କାନ୍ଦୁଥିଲା !

ପାର୍କରେ ଅନ୍ଧାର ହେଇ ଆସୁଛି। ଲିପ୍‌ସାକୁ ଖୁବ୍ ଭୋକ। ସୋମ୍‌ର ମଧ ଖାଇବା ସମୟ ହୋଇଛି। ଏବେ ସେ ଜିଦ୍ କରୁଛି, ''ମମି ଯିବା।'' ତା'ର ଅସ୍ପଷ୍ଟ କଥାର ଭାବ ବୁଝିପାରି ବସିଥିବା ବେଞ୍ଚରୁ ଉଠି ପଡ଼ିଲା ଲିପ୍‌ସା।

ସେଇ ରାତିରେ ସେ ସିଦ୍ଧାନ୍ତକୁ ପଚାରିଲା, ''ପିଲାଟାକୁ ଛାଡ଼ି କଲେଜ ଯିବାକୁ ମନ ହଉ ନାହିଁ।''

''କିଛି ଦିନ ଛୁଟୀ ନେଇଯାଅ।'' ସିଦ୍ଧାନ୍ତର ନିର୍ଲିପ୍ତ ଉତ୍ତର।

ଲିପ୍‌ସା କହିବ କହିବ ହେଲା– ବୋଉଙ୍କୁ ଟିକେ କୁହ, ସେଇ ସମୟଟା ଯଦି ଘରେ ରହନ୍ତେ, ସୋମ୍‌କୁ ଟିକିଏ ସଂଭାଳି ନିଅନ୍ତେ କି...।

ନା, ଥାଉ ଯାହା ନ ହୋଇ ପାରିବ ଅଥଚ ମହାଅଶାନ୍ତିର ଝଡ଼ ଉଠିବାର ସଂଭାବନା, ସେ ସବୁ ମନରେ ଆଣୁଛି ସେ କାହିଁକି ? ନିଜ ଉପରେ ଏତିକି ଅକ୍ତିୟାର ନାହିଁ ତ ସେ କି ମଣିଷ ?

ଯାହା ମନରେ ଆସିବ ତାହା କହି ପକାଇବା କେତେଦୂର ଠିକ୍? ସେ କଥାରେ କୋଉଠି କାହାର କେତେ କ୍ଷତି ହେଉଛି, ତା' ଯିଏ ଭାବି ନ ପାରିବ ସେ ଉପଯୁକ୍ତ ବ୍ୟକ୍ତିରେ ଗଣା ହୋଇ ପାରିବ କି?

ସିଦ୍ଧାନ୍ତକୁ ସୁଖୀ କରିବା ପରିବର୍ତ୍ତେ ସେ କଷ୍ଟ ଦେବ କାହିଁକି? କୋଉଠି କିଏ ଭୁଲ କରୁଛି କି ଠିକ୍ କରୁଛି, ତା' ଭାବିବା ପୂର୍ବରୁ ପ୍ରଥମେ ନିଜକୁ ପରଖି ନେବା ଉଚିତ।

ସେ ସ୍ୱାର୍ଥପର ନୁହେଁ ତ କ'ଣ? ସବୁ ଦୁର୍ଭାବନା, ସବୁ ବିଚାର କେବଳ ନିଜ ପାଇଁ। ଅନ୍ୟଜଣେ ହେଇ ଯଦି ଚିନ୍ତା କରନ୍ତା? ନିଜକୁ କେତେ ସଂକୀର୍ଣ୍ଣ କରୁଛି ସେ!

ଲିପ୍ସାର ସବୁ ମହତ୍ ଚିନ୍ତା ଅକସ୍ମାତ୍ ହଜିଯାଏ ଚଗଲା ସୋମ୍‌କୁ ଦେଖିଲେ। ଦିନକୁ ଦିନ ଦୁଇବର୍ଷର ସୋମ୍ ଅବୁଝା ଜିଦିଆ ହେଇଉଠୁଛି। ଲିପ୍ସା ପାଇଁ ସମସ୍ୟା। କାହାକୁ କିଛି ନ କହି ପାରୁଥିବା ଯନ୍ତ୍ରଣାରେ ସେ ଅସ୍ଥିର ହେଇ ଉଠେ। ସମସ୍ତେ ପିଲାକୁ ଗେହ୍ଲା କରିବେ, ଅଥଚ କେହି ଦାୟିତ୍ୱ ନେବେ ନାହିଁ।

ଅନିରୁଦ୍ଧ ସକାଳ ବୁଲା ଶେଷ କରି ଚା' ଖାଇବା ବେଳେ ସୋମ୍ ଉଠିପଡ଼େ। ତାଙ୍କ ପାଖରେ ଠିଆହୋଇ ଚା' ପିଇବାକୁ ଜିଦ୍ କରେ ସେ। ତାକୁ କୋଳରେ ବସାଇ ବିସ୍କୁଟ ଭାଙ୍ଗି ତା' ପାଟିରେ ଦିଅନ୍ତି ସେ। ପାଞ୍ଚ ମିନିଟ୍ ପରେ ସାବିତ୍ରୀ ପିଲାକୁ ନେଇଯାଏ।

କୌଶଲ୍ୟା ସାଢ଼େ ଆଠଟାରୁ ନଅଟା ମଧ୍ୟରେ ବାହାରକୁ ଯିବାକୁ ପ୍ରସ୍ତୁତ ହୋଇ ଗାଡ଼ିକୁ ଅପେକ୍ଷା କରିବା ସମୟରେ ସୋମ୍ ସହ ବଲ୍ ଗଡ଼େଇ କିମ୍ବା ତାକୁ କାଖ କରି ଟିକିଏ ଖେଳି ବସନ୍ତି। ସେ ପ୍ରାୟ ଦଶ, ପନ୍ଦର ମିନିଟ ସମୟ ରହନ୍ତି। ଗାଡ଼ି ଆସିଲେ ଚାଲିଯାଆନ୍ତି।

ଅନିରୁଦ୍ଧ ଖବରକାଗଜରୁ ଆଖି ଉଠାଇ ଚାହାଁନ୍ତି ନାହିଁ। ସେତିକିବେଳେ ଲିପ୍ସାର ଘୋଡ଼ା ଦୌଡ଼ ଚାଲିଥାଏ। ସୋମ୍ ଗାଧୋଇବ, ଖାଇବ। ସେ ନିଜେ ପ୍ରସ୍ତୁତ ହୋଇ ବାହାରିବ।

ସାବିତ୍ରୀ ପାଖରୁ ସୋମ୍‌କୁ ନେଇ ଟିକିଏ ଗେହ୍ଲାକରି ବାହାରି ଯାଆନ୍ତି କୌଶଲ୍ୟା।

ସୋମ୍‌ର 'ମାମା.. ଟା...ଟା' ଡ଼ାକ ଶୁଣିଲେ ଲିପ୍‌ସା ବୁଝିପାରେ, ଶାଶୁ ବାହାରକୁ ଗଲେ।

ସକାଳୁ ସକାଳୁ ଅବୁଝା ସୋମ୍‌କୁ ନେଇ ଲିପ୍‌ସା, ସିଦ୍ଧାନ୍ତ ବ୍ୟସ୍ତ ହେଇ ଉଠିଛନ୍ତି। ସାବିତ୍ରୀକୁ ଜ୍ୱର, ଏବେ ସୋମ୍‌କୁ ଜଣେ ରଖିଲେ, ଅନ୍ୟଜଣେ କିଛି କାମ କରିପାରୁଛି।

ସିଦ୍ଧାନ୍ତ କିଛି ସମୟ ତା' ସହ ବଲ୍ ଖେଳିଲା। ଛୋଟ ସାଇକେଲରେ ବୁଲାଇଲା ଲମ୍ବା ବାରଣ୍ଡା ସାରା।

ଅନିରୁଦ୍ଧଙ୍କ କୋଳରେ ବସାଇ ଦେଲା ସୋମ୍‌କୁ। ଲିପ୍‌ସା ଏବେ ତରତରରେ ନିଜେ ଗାଧୋଇବା ଶେଷ କଲା।

ସୋମ୍‌କୁ ଅନିରୁଦ୍ଧ ବହିରୁ ଚିତ୍ର ଦେଖାଇ ନିଜ ପାନବଟାରୁ ଟିକିଏ ପାନ ଛିଣ୍ଡେଇ ଖାଇବାକୁ ଦେଇ କୌଣସି ପ୍ରକାରେ ବୁଝେଇ ରଖିବାକୁ ଚେଷ୍ଟା କରୁଥିଲେ।

ଅଥଚ କୌଶଲ୍ୟାଙ୍କର କ'ଣ ଏମିତି କାମ ଯେ ତରତରରେ ବାହାରି ସିଦ୍ଧାନ୍ତ ସଙ୍ଗେ ଚାଲିଗଲେ। ସେ ବୁଝିଲେ ନାହିଁ, ଲିପ୍‌ସା କଲେଜ କିପରି ଯିବ? ସାବିତ୍ରୀ ତ ବିଛଣାରୁ ଉଠିପାରୁ ନାହିଁ।

ଅନନ୍ୟୋପାୟ ହୋଇ ଲିପ୍‌ସା ଛୁଟୀ ଦରଖାସ୍ତ ଲେଖି ବସିଲା।

ଅନିରୁଦ୍ଧ ବହି ଖଣ୍ଡିଏ ଧରି ତାଙ୍କ ଶୋଇବା ଘରେ ଟେବୁଲ୍‌ରେ ବସି ରହିଥିଲେ।

ଲିପ୍‌ସା ବୈଠକ ଘରେ ବସି ଅପେକ୍ଷା କରିଛି ଡ୍ରାଇଭରକୁ। ସେ ଆସିଲେ ଛୁଟୀ ଦରଖାସ୍ତ ପ୍ରିନ୍‌ସିପାଲ୍‌ଙ୍କ ପାଖକୁ ପଠାଇବ। ସୋମ୍ ସେଇଠି ଖେଳନା ଧରି ଖେଳୁଛି।

କୌଶଲ୍ୟା ଫେରି ଆସିଲେଣି। ଶାଶୁଙ୍କୁ ଚାହିଁ ଆଶ୍ଚର୍ଯ୍ୟ ହେଲା ଲିପ୍‌ସା! ତାଙ୍କର କ'ଣ ଅଛି? ପୁଣି କୁଆଡ଼େ ବାହାରିଯିବେ ଆଜ୍ଞା ଦେବାକୁ।

''କିଲୋ ମା'? ଆଜି ବାହାରିନୁ ଏ ଯାଏ?'' କୌଶଲ୍ୟା ବୋହୁକୁ ଆଶ୍ଚର୍ଯ୍ୟରେ ଚାହିଁଲେ।

''ନା, ଯିବି ନାହିଁ।'' ଲିପ୍‌ସାର ବିମର୍ଷ ଭାବ ଦେଖି କୌଶଲ୍ୟା କ'ଣ ଭାବିହେଲେ। ପଚାରିଲେ, ''ସାବି ଉଠିଲା ନାହିଁ।''

—ଜ୍ୱର ବଢ଼ୁଛି। ଶୋଇଛି ଔଷଧ ଖାଇ।

—ଠିକ୍ ଅଛି। ମୁଁ ରହିବି ଆଜି। ତୁ କଲେଜ ଯାଅ।

ସୋମ୍‌କୁ କୋଳେଇନେଲେ କୌଶଲ୍ୟା।

—ନା, ଥାଉ। ଆପଣ ଯୁଆଡ଼େ ଯିବା କଥା ଯାଆନ୍ତୁ।

ସୋମ୍‌କୁ ତାଙ୍କଠାରୁ ଛଡ଼େଇ ନେଲା ଲିପ୍‌ସା।

"ପାଗଳୀଟା କିଲୋ! ମୋର ପରା ଆଜି ଯିବା ବନ୍ଦ ହେଲା।" କୌଶଲ୍ୟା ହସି ହସି କହିଲେ।

ଓହୋ ଦୟା କରୁଛନ୍ତି! ଦିନଟିଏ ଦୟାରେ ମୁଁ ବିଗଳିତ ହୋଇଯିବି!

"ତୁ ଯା' ବାହାରିପଡ଼। ଡ଼େରି ହେଇଯିବ।"

କୌଶଲ୍ୟାଙ୍କ କଥାରେ ଲିପ୍‌ସା ସୋଫାରୁ ଉଠିପଡ଼ିଲା, ସୋମ୍‌ର ଖେଳନା ସବୁ ବ୍ୟାଗ୍‌ରେ ତରତରରେ ଭର୍ତ୍ତି କରି ରଖି ତା'କୁ କାଖେଇ ଘର ଭିତରକୁ ଯାଉ ଯାଉ କହିଲା, "ମୋତେ କିଛି ବୁଝେଇବା ଦରକାର ନାହିଁ। କ'ଣ କରିବାକୁ ହେବ ମୁଁ ଠିକ୍ ଜାଣିଛି।"

ତା' ଯିବା ରାସ୍ତାକୁ ନୀରବରେ ଚାହିଁ ରହିଲେ କୌଶଲ୍ୟା।

ସେ ପାଖରେ ଫୋନ୍ ବାଜୁଛି। ଅନ୍ୟମନସ୍କ ଭାବରେ ଫୋନ୍‌ଟା ଉଠାଇନେଲେ ସେ।

"ହଁ, କହ।... ଏତେ ଶୀଘ୍ର?... ଆଚ୍ଛା ହଉ।" ନିସ୍ପୃହ ଭାବରେ ଉତ୍ତର ଦେଲେ କୌଶଲ୍ୟା। ସେପାଖରୁ କିଏ ତାଙ୍କୁ ବୁଝେଇ କ'ଣ କହୁଥିଲା। କୌଶଲ୍ୟାଙ୍କର କିଛି କହିବାର ଆବଶ୍ୟକତା ନ ଥିଲା।

ଶୋଇବା ଘର କବାଟ ଆଉଜେଇ ଛୋଟ ଆଟାଚି ଖଣ୍ଡିକରେ କିଛି ଲୁଗାପଟା, କାଗଜପତ୍ର ତରତରରେ ସଜାଡ଼ି ବସିଲେ ସେ। ପିନ୍ଧିଥିବା ଲୁଗାଟା ବଦଳାଇ ମୁହଁ ଧୋଇ ପୋଛି ପାଖ ଦର୍ପଣ ପାଖରେ ଠିଆ ହୋଇ ମୁଣ୍ଡବାଳ ସଜାଡ଼ି ନେଲେ। ଦେହରେ ସାଲ୍ ଖଣ୍ଡେ ପକାଇ ବାହାରକୁ ଆସି ଅନିରୁଦ୍ଧଙ୍କୁ ଖୋଜିହେଲେ ବୋଧହୁଏ।

ରୋଷେଇ କରୁଥିବା ଲୋକକୁ ପଚାରିଲେ, "ବାବୁ କୁଆଡ଼େ ଗଲେ କି?"

"ଏଇତ ଆପଣ ଆସିବା ଆଗରୁ ବାହାରିଗଲେ। ସେଇ ବହି ପଢ଼ା ଯାଗା କି କ୍ଲବ୍ ଫ୍ଲବ୍ ଯାଇଥିବେ ମା'।"

ଚୁଲିରେ କରେଇ ବସିଛି, ତେଲ ଗରମ ହେଇଗଲାଣି। ଲୋକଟି ମାଛ ଭାଜିବାକୁ ଯାଉଥିଲା। ଡ଼ର ଡର ହେଇ ଏତିକି କଥା କହି ପକାଇଲା।

କୌଶଲ୍ୟା ଶୋଇବା ଘରୁ ଆଟାଚି ଖଣ୍ଡକ ନେଇ ନିଃଶବ୍ଦରେ ବାହାରକୁ ଚାଲିଆସିଥିଲେ। ଫାଟକ ପାଖରେ ତାଙ୍କୁ ଅପେକ୍ଷା କରି ଜିପ୍‌ଟିଏ ରହିଥିଲା।

ଲିପ୍‌ସା କଲେଜ ଗଲା ନାହିଁ। ଅନିରୁଦ୍ଧ ଖାଇବାବେଳେ ପଚାରିଲେ, "ତୋର ବୋଉ କୁଆଡ଼େ ଗଲା, ଲିପ୍‌ସା ? ଏ ଯାଏ ଆସିଲା ନାହିଁ ଯେ ?"

"ମୁଁ ଜାଣିନି, ଆପଣ ଖାଇସାରି ବିଶ୍ରାମ ନିଅନ୍ତୁ। ସେ ତ କିଛି କହି ଯାଇ ନାହାଁନ୍ତି।"

"ଠିକ୍ ଅଛି ମା', ତୁ ଅପେକ୍ଷା ନ କରି ଖାଇନେ।" ଅନିରୁଦ୍ଧଙ୍କର ଅଧିକ କିଛି କହିବାର ନ ଥିଲା।

ଲିପ୍‌ସା ମଧ୍ୟ କାହାକୁ କିଛି କହିବାକୁ ଇଚ୍ଛା କରୁ ନ ଥିଲା। ସାରାଦିନ ଭାରାକ୍ରାନ୍ତ ମନ ନେଇ ସୋମ୍‌କୁ ଧରି ବସି ରହିଥିଲା ସେ ଘରେ।

ସନ୍ଧ୍ୟା ଯାଇ ରାତି ହେଲା। କୌଶଲ୍ୟା ଫେରିଲେ ନାହିଁ।

ସୋମ୍‌କୁ ଶୁଆଇବାକୁ ଯାଇ ନିଦ ହେଇ ଗଲା ଲିପ୍‌ସାକୁ।

ସିଦ୍ଧାନ୍ତ ତାକୁ ହଲେଇଦେଇ ଡ଼ାକିଲା, "ଉଠ ଲିପ୍‌ସା, ଖୁବ୍ ଭୋକ ହେଲାଣି। ଆଜି ଖାଇବାକୁ ଦବନି କି ?"

"ଏଁ ରାତି ଦଶଟା !" ଲିପ୍‌ସା ବିଛଣାରେ ବସି ଘଣ୍ଟାକୁ ଚାହିଁଲା।

ଟେବୁଲ ପାଖରେ ସମସ୍ତେ ବସିଲେ। ଲିପ୍‌ସାର ମନ ଦବିଯାଉଚି। ସେ ଆଶ୍ଚର୍ଯ୍ୟରେ କୌଶଲ୍ୟାଙ୍କ ଶୋଇବା ଘର ଆଡ଼େ ଚାହୁଁଚି।

ସେପାଖରୁ ବୈଠକଘର ଭିତରୁ ଆସିଲେ ଅନିରୁଦ୍ଧ।

"ବୋଉ କୁଆଡ଼େ ଗଲେ, ଡ଼ାକ। ହଇହେ, ଶୋଇଗଲ କି ? ପିଲାଏ ଅପେକ୍ଷା କରିଛନ୍ତି।" ଅନିରୁଦ୍ଧ କୌଶଲ୍ୟାଙ୍କୁ ଡ଼ାକୁଥିଲେ।

ଲିପ୍‌ସାର ଆତଙ୍କିତ ମୁହଁ। ଶୋଇବା ଘରର ଦର ଆଉଜା ହୋଇଥିବା କବାଟ ଖୋଲିଦେଇ ସେ ଅସ୍ଥିର ହେଇ ଉଠିଲା।

"ଏଁ କୁଆଡ଼େ ଗଲେ ସେ !"

ଅନିରୁଦ୍ଧ ଆଶ୍ଚର୍ଯ୍ୟରେ ଚାହିଁଲେ ଲିପ୍‌ସାର ମୁହଁକୁ। ଏତେ ରାତି ପର୍ଯ୍ୟନ୍ତ କୌଶଲ୍ୟା କେବେ ଏକାକୀ ବାହାରେ ରହି ନାହାଁନ୍ତି। କ'ଣ ଏମିତି କାମ ପଡ଼ିଲା ?

ଅନିରୁଦ୍ଧ ଖାଇବା ଟେବୁଲ ପାଖରେ ମୂର୍ତ୍ତିଟିଏ ଭଳି ବସି ରହିଛନ୍ତି।

ଲିପ୍ସା ବୁଝିପାରୁନି କାହାକୁ କ'ଣ କହିବ। କେତେ କ'ଣ ଦୁଶ୍ଚିନ୍ତା ଗ୍ରାସ କରିଥିଲା ତାକୁ। ପେଟ ଭିତରୁ ସତେକି କୋହ ଉଠି ଆସୁଛି। ଏ କ'ଣ ହେଲା ? ନିଜକୁ କୌଣସି ପ୍ରକାର ସେ ସ୍ଥିର ରଖି ପାରୁନାହିଁ।

ଗାଧୋଇବା ଘରୁ ବାହାରି ଆସିଲା ସିଦ୍ଧାନ୍ତ। ଖାଇବା ଟେବୁଲ ପାଖରେ ଅଖଣ୍ଡ ନୀରବତା।

"କ'ଣ ହେଲା, ବାପା ? ଏମିତି ବସିଛ କାହିଁକି ?" ଅନିରୁଦ୍ଧ ଉତ୍ତର ଦେଲେ ନାହିଁ।

ଲିପ୍ସା ସଙ୍କ ସକ ହୋଇ କାନ୍ଦିପକାଇଲା।

"ବୋଉ ସକାଳୁ ଘରକୁ ଫେରି ନାହାଁନ୍ତି। ଟିକେ ଦେଖ ସେ କୁଆଡ଼େ ଗଲେ।"

"ଓହୋ, ବୁଝି ପାରୁନି ତୁମର କ'ଣ ହେଉଛି ? ବୋଉ କ'ଣ କାହାକୁ କିଛି କହି ଯାଇନି ?" ସିଦ୍ଧାନ୍ତ ଆଶ୍ଚର୍ଯ୍ୟରେ ପଚାରିଲା।

ଲିପ୍ସା ଲୁହ ପୋଛି ନୀରବ ରହିଲା।

"ଦିନ ଦଶଟାରେ ମୁଁ ତାକୁ ଫୋନ୍ କରିଥିଲି, ଅଥଚ ଘରେ କେହି କିଛି ଜାଣିନ ?"

ସିଦ୍ଧାନ୍ତର ନିଶ୍ଚିନ୍ତ ମୁହଁ ଦେଖି ମଧ୍ୟ ଲିପ୍ସାର ବ୍ୟଗ୍ରତା କମି ନ ଥିଲା। ଆତ୍ମଗ୍ଲାନିରେ ସେ ବ୍ୟଥିତ ହେଉଥିଲା।

ରୋଷେଇ କରିବା ଲୋକଟି ଆସି କହୁଛି, "ମୋତେ ପଚାରିଲେ, ବାବୁ ଘରେ ଅଛନ୍ତି କି ନାହିଁ।"

"କାହାକୁ ସେ କହିଥାଆନ୍ତା! ତୁମେ ତ ଘରେ ନ ଥିଲ, ବାପା। ଲିପ୍ସା କଲେଜ ବାହାରିଯାଇଥିବ। ଏବେ କେହି ଆଉ ବ୍ୟସ୍ତ ହୁଅନା। ମୁଁ କହୁଚି କ'ଣ ହେଉଛି।"

ନିଜ ଖାଇବା ପ୍ଲେଟ୍‌ରେ ନେଇ ଖାଇବା ଆରମ୍ଭ କରି ସିଦ୍ଧାନ୍ତ କହିଲା, "ଦିଲ୍ଲୀ ଯିବା ତା'ର ନିହାତି ଜରୁରୀ ଥିଲା। ଅନ୍ୟଜଣଙ୍କୁ ପଠାଇବାକୁ ଭାବିଥିଲୁ। ତା'ର ଅସୁବିଧା ହେଲା ଶେଷ ମୁହୂର୍ତ୍ତରେ। ଭାଗ୍ୟକୁ ବୋଉର ଫ୍ଲାଇଟ୍ ଟିକେଟ୍ ସେଇ ଲାଷ୍ଟ୍ ମୋମେଣ୍ଟ୍‌ରେ ହିଁ ମିଳିଗଲା।"

''ଦିଲ୍ଲୀ ? କାହାକୁ କିଛି ନ କହି ଏକବାରକେ ଦିଲ୍ଲୀ ?'' ବିରକ୍ତିରେ ପଚାରିଲେ ଅନିରୁଦ୍ଧ ।

''ବାପା, କାହିଁକି ମିଛରେ ବ୍ୟସ୍ତ ହଉଛ ? ବୋଉ କ'ଣ ଛୁଆ ପିଲା ହେଇଚି ? ସେ ତ ପୁଣି ଏତେ ସବୁ ସଂଭାଳି ପାରୁଛି । ଏମିତି ଚାହିଁଛ କ'ଣ ଲିପ୍‌ସା ? କେବେ ଏସବୁରେ ମୁଣ୍ଡ ଖେଳାଇଲେ ବୁଝନ୍ତ କାମଟା କେତେ ଦାୟିତ୍ୱପୂର୍ଣ୍ଣ । ଡ଼େସ୍‌ଟିଚ୍ୟୁଟ୍ ହୋମ୍‌ର ଅନାଥ ପିଲା, ସମସ୍ତଙ୍କୁ ସଂଭାଳିବାକୁ ହେଉଛି । ସେମାନଙ୍କ ପାଇଁ ସ୍କୁଲ, ଲାଇବ୍ରେରୀ, ଖେଳଘର, ଡ଼ାକ୍ତରଖାନା ଥରେ ଯାଇ ବୁଲି ଦେଖି ଆସ । କଂପାନୀ ସେମାନଙ୍କ ପାଇଁ କ'ଣ ବ୍ୟବସ୍ଥା କରିଛି । ଅବଶ୍ୟ ଚେୟାରପରସନ୍ ଅର୍ଥାତ୍ ବୋଉର ପ୍ଲାନିଂ ବେଶ୍ ପ୍ରଶଂସନୀୟ । ସେ ଏ ସବୁ ମୁଣ୍ଡ ଖଟେଇ ନ ଚଳାଇଲେ ଏଠି କରିବାକୁ କିଏ ଅଛି ? କିଛି ହେଇପାରନ୍ତା ନାହିଁ ।''

ଲିପ୍‌ସା ପାଟିରେ କଥା ନ ଥିଲା । ସେ ପାଖରେ ଫୋନ୍ ବାଜୁଛି ।

ଫୋନ୍‌ଟା ଉଠାଇ ନେଲା ସିଦ୍ଧାନ୍ତ । ହସି ହସି କହିଲା, ''ବୋଉ ? ଭଲ ତୁ ସମସ୍ତଙ୍କୁ ଏଠି ଟେନ୍ସ କରିଦେଇଗଲୁ ! ନେ – ଲିପ୍‌ସା ସଙ୍ଗେ କଥା କହ !''

''ବୋଉ, ଆପଣଙ୍କୁ ମୋ ରାଣ, ଶୀଘ୍ର ଫେରି ଆସନ୍ତୁ ।'' ଅଧିକ କୋହ ହେତୁ ଲିପ୍‌ସା ଆଉ କିଛି କହି ପାରିଲା ନାହିଁ । ତା' ଆଖିରୁ ଲୁହ ଝରିଲା । ସିଦ୍ଧାନ୍ତ, ଅନିରୁଦ୍ଧ କିଛି ବୁଝି ନ ପାରି ତାକୁ ଚାହିଁ ରହିଥିଲେ ।

□ □

# ଛାଇ ଆଲୁଅ

ଏମିତି କ୍ୱଚିତ୍ କେହି ଥାଆନ୍ତି ଯାହାଙ୍କୁ ଦେଖିଲେ ମନେହୁଏ, ନିଜକୁ ନେଇ ସେ ବେଶ୍ ସୁଖୀ । ଶାନ୍ତଜୀବନ, ଚିନ୍ତା ନାହିଁ ବା ସମସ୍ୟା ନାହିଁ। କିପରି ଏକ ନିର୍ଲିପ୍ତ, ନିର୍ବିକାର ଭାବ। ମନକୁ ପକ୍ଷୀଟିଏ ଭଳି ଛାଡ଼ିଦେଇଛନ୍ତି କେଉଁ ଅତୀନ୍ଦ୍ରିୟ ରାଜ୍ୟକୁ। ଶରୀରକୁ ଧରି ଯାହା ଚଳପ୍ରଚଳ ହୁଅନ୍ତି, ଆଳାପ ହୁଏ, ସ୍ୱାଭାବିକ ଭାବେ ହସଖୁସି ଚାଲିଥାଏ, ଅଥଚ ନିଜେ ନିଜ ମଧ୍ୟରେ ନଥାନ୍ତି !

ଅଦ୍ଭୁତ ଅନ୍ୟମନସ୍କ ଭାବ। ଏମିତି ଜଣଙ୍କୁ ନେଇ ଘର ସଂସାର କରିବା କଷ୍ଟ । ଏ ସମସ୍ୟା ନିଖିଳେଶର ! କାହାକୁ କହିବ ? ନିଜ ଅର୍ଜିତ କର୍ମ !

ବିବାହ ପୂର୍ବରୁ ନିଶିପଦ୍ମାକୁ ସେ ନିଜେ ଦେଖି ପସନ୍ଦ କରିଥିଲା। ତା'ର ରୂପ, କେତେପଦ କଥାରେ ସେ ମୁଗ୍ଧ ହୋଇଥିଲା। ଏବେ ଭାବେ, ସାମୟିକ ଦୁର୍ବଳତା ! ତା' ନହୋଇଥିଲେ, ଆଦୌ ଜ୍ୟୋତିଷ ଶାସ୍ତ୍ର ବିଶ୍ୱାସ କରୁ ନଥବା ନିଖିଳେଶ ବାପା, ମା'ଙ୍କଠାରୁ ପାଞ୍ଚ, ଛଅଟି ଟିପ୍ପଣୀ, ଝିଅମାନଙ୍କର ଧଡ଼ିଏ ଲଫାପା ସବୁ ଘରୁ ଆସିବା ବେଳେ ତରତରରେ ନେଇ ଆସି ଥାଆନ୍ତା କାହିଁକି ?

ସେମାନେ କଥାବାର୍ତ୍ତା କରୁଥିଲେ, ''ଯେଉଁଠି ଝିଅ ପସନ୍ଦ, ସେଠି ଜାତକ ମିଶୁନି। କ'ଣ କରିବା ?''

ସେ କହିଲା, ''ବୋଉ, ତୁ ବ୍ୟସ୍ତ ହ'ନା; ମୋ ଉପରେ ଛାଡ଼ିଦେ। ସବୁ ଠିକ୍ କରି ମୁଁ ଶୀଘ୍ର ଚିଠି ଦେବି।''

ଘରୁ ଆସିବାବେଳେ ସାଙ୍ଗରେ ଆଣିଥିବା ଚିଠିସବୁ ନେଇ ନିଖିଳେଶ୍ ବଡ଼ ଭଉଣୀ ଇନ୍ଦ୍ରାଣୀ ଘରେ ପହଞ୍ଚେ। ଆତ୍ରେୟ ଭଲ ଜ୍ୟୋତିଷୀ ଜାଣନ୍ତି। ଜ୍ଞାନୀ

ଗୁଣୀ ବ୍ୟକ୍ତି। ତାଙ୍କ ସହ କଥାବାର୍ତ୍ତା କରି ବାହାଘର ବିଷୟରେ ଯାହା କିଛି ସ୍ଥିର କରିବାକୁ ହେବ। ନଚେତ୍ ଏସବୁ ବନ୍ଦ କରି କେତେ ବର୍ଷ ଏକାକୀ ରହିବା ବରଂ ଶ୍ରେୟସ୍କର, ଏକଥା ବାଧ୍ୟତଃ ଘରକୁ ଲେଖି ଜଣାଇବ ଶେଷରେ।

ଆଡ୍ରେୟ ଟିପଣୀକୁ ଥରେ ଚାହିଁଦେଇ କହିଲେ, "ଅରି ଷଡ଼ାଷ୍ଟକ, ଆଉ କ'ଣ ଦେଖିବି ?"

ନିଖିଳେଶ୍ କ'ଣ କହିବ ଭାବିହେଲା କିଛି ସମୟ। ଫଟୋ ଖଣ୍ଡିକ ଆଉ ଥରେ ଦେଖିଲା'। ଅନ୍ୟ ଫଟୋସବୁ ଅପସନ୍ଦ କରି ଫେରାଇ ଦେଲା ଏବଂ ଶେଷରେ ନିଶିପଦ୍ମାକୁ ବିବାହ କରିବା ପାଇଁ କ'ଣ କରାଯାଇପାରେ ସେ ଉପାୟ ଭିଣୋଇଙ୍କୁ ବତାଇଲା।

ଆଡ୍ରେୟ ଆଦୌ ରାଜି ନଥିଲେ। ଘୋର ଅନ୍ୟାୟ! ନିଖିଳେଶ୍ କଥାଟାକୁ ହସରେ ଉଡ଼େଇ ଦେଲା। ଭିଣୋଇ, ଭଉଣୀଙ୍କୁ ନେଇ ପହଞ୍ଚିଲା ନିଶିପଦ୍ମା ଘରେ।

ବାପା, ବୋଉଙ୍କୁ ଟେଲିଗ୍ରାମ ପଠେଇଲା– ଜାତକ ରାଜଯୋଟକ; ଝିଅ ପସନ୍ଦ ହୋଇଛି।

ଏ ମିଛ କଥାରେ ସାକ୍ଷୀ ନିଜେ ଆଡ୍ରେୟ। ନିଖିଳେଶ୍‌କୁ ସନ୍ତୁଷ୍ଟ କରିବାକୁ ଏଥିରେ ରାଜି ହେବା ବ୍ୟତୀତ ଅନ୍ୟ ରାସ୍ତା ନ ଥିଲା।

ଜାତକ, ଜ୍ୟୋତିଷଙ୍କୁ ବିଶ୍ୱାସ ନ କଲେ କ'ଣ ହେବ ଆଡ୍ରେୟଙ୍କର ସେଇ ଅସନ୍ତୁଷ୍ଟ, ଆଶଙ୍କିତ ମନୋଭାବ ଏ ପର୍ଯ୍ୟନ୍ତ ଭୁଲିପାରେ ନାହିଁ ନିଖିଳେଶ୍। ନିଶିପଦ୍ମାର ପ୍ରତି ପଦକ୍ଷେପରେ ତା'ର ଜାତକର ଦୋଷ କଳା ଛାଇଟିଏ ହୋଇ ଡ଼ରାଏ ନିଖିଳେଶ୍‌କୁ। ତା'ର ମନେହୁଏ, ଜୀବନର ଦୀର୍ଘ କୋଡ଼ିଏ ବର୍ଷ ବ୍ୟର୍ଥତାରେ ଯାହା ବିତିଗଲା!

ଏସବୁ ବୁଝେ ନାହିଁ ନିଶିପଦ୍ମା। କାୟା ସହ ଛାୟା ଭଳି ନିଖିଳେଶ୍‌ର ସୁଖ ଦୁଃଖର ସାଥି ସେ। ଅଭାବ, ଅସୁବିଧା, ନିଖିଳେଶ୍‌ର ବିରକ୍ତି, ଅସନ୍ତୋଷ କିଛି ଦେହକୁ ନିଏ ନାହିଁ। କେବେ ବି କହେ ନାହିଁ, 'ରାଗୁଚ କାହିଁକି ? କ'ଣ ହେଲା ?' ମୁହଁ ଶୁଖେଇ ବସେ ନାହିଁ? ଅଭିଯୋଗ କରେ ନାହିଁ।

ସତର, ଅଠର ବର୍ଷର ଝିଅ; ପନ୍ଦର, ଷୋଳ ବର୍ଷର ପୁଅ। ସୁନ୍ଦର, ଶାନ୍ତ, ବାଧ୍ୟ, ବୁଦ୍ଧିଦୀପ୍ତ ପିଲା ଦୁଇଟି।

ନିଖିଳେଶ୍‌ର ଚାକିରି, ପଦୋନ୍ନତି, ପିଲା ଦୁହିଁଙ୍କ ପାଠ ପଢ଼ା ସବୁ ଠିକ୍ ଚାଲିଥାଏ ।

ଯିଏ ଦେଖିଲେ କହିବ ନିଖିଳେଶ୍ ଖୁବ୍ ସୁଖୀ । ନିଶିପଦ୍ମା ଭଳି ସୁଶ୍ରୀ, ସୁଶିକ୍ଷିତା, ସ୍ନେହୀ, ମେଳାପୀ ପତ୍ନୀ, ଦୁଇଟି ପୁଅ ଝିଅ ! ଅଧିକ କ'ଣ ?

ଆତ୍ରେୟ ବିସ୍ମିତ ହୁଅନ୍ତି । ଥରେ ଥରେ ଜ୍ୟୋତିଷଶାସ୍ତ୍ର ନେଇ ଆଲୋଚନା ହୁଏ ନିଖିଳେଶ୍‌ଙ୍କ ସହ । ସେ କହନ୍ତି, "ଶିଶୁଟି ଭୂମିଷ୍ଠ ହେବା ସମୟ କେତେ ଦୂର ନିର୍ଭୁଲ ? ଅନେକ ସୂକ୍ଷ୍ମ ବିଚାର ମଧ ଅଛି । ତୁମେ ତ ଡରଡର ହେଲ । ନଚେତ୍ ମୁଁ ଛାତକ ତିଆରି କରି ତୁମ ଟିପ୍ପଣୀ ସହ ମିଳେଇ ଦେଖିଥାଆନ୍ତି ।"

ଇନ୍ଦ୍ରାଣୀ ବିରକ୍ତ ହୁଏ, "ବାହା ହେଲୁ, ନିଶିପଦ୍ମା ଭଳି **ଭଲ ଝିଅ** ଭାଗ୍ୟ କଥା । ସବୁ ଠାକୁରଙ୍କ ଇଚ୍ଛାରେ ହୋଇଛି । ଏବେ ଏସବୁ ପୁଣି କାହିଁକି ?"

ନିଖିଳେଶ୍ କହିପାରେନା କିଛି । ଭାବେ, ଥରେ ଆତ୍ରେୟଙ୍କୁ ପଚାରିବ କି ?

ନିଶିପଦ୍ମାର ମନରେ କ'ଣ ଅଛି ? କି ଭାବନା ତାକୁ ଆନମନା କରୁଛି ? ସ୍ୱାମୀ ପିଲାଙ୍କ ପ୍ରତି ଏତେ ବେଶୀ ଅନାସକ୍ତ ଭାବ ଅଥଚ ବାହାରର ଜଣେ କାହାକୁ ଦେଖିଲେ ବେଶ୍ ସାଧାରଣ କଥାବାର୍ତ୍ତା ! ସେଥିରେ ଅବହେଳା ନାହିଁ ।

ସେଦିନ ରବିବାର । ଆତ୍ରେୟଙ୍କୁ ଘରକୁ ଡ଼ାକିଥିଲା ନିଖିଳେଶ୍ । ନିଶିପଦ୍ମା ନିଜେ ରାନ୍ଧି ସମସ୍ତଙ୍କୁ ଖାଇବାକୁ ଦେଲା । ବଡ଼ ନଣନ୍ଦଙ୍କୁ ନ ଆଣି ଏମିତି ଏକା ଏକା ଆସିବା ଠିକ୍ ହେଲା ନାହିଁ, ଏଥିନେଇ ମନ ଖରାପ କରି କହିଲା ଆତ୍ରେୟଙ୍କୁ ।

ଖାଇବା ଶେଷ ହେବାପରେ ନିଖିଳେଶ୍, ଆତ୍ରେୟ ଉଠି ଆସିଥିଲେ ବୈଠକ ଘରର ଅନ୍ୟ ପାଖରେ ଥିବା ନିଖିଳେଶ୍‌ର ଷ୍ଟଡ଼ିରୁମ୍‌କୁ । ନିଖିଳେଶ୍ ଅଳ୍ପ କିଛି ସମୟ କଥାବାର୍ତ୍ତା କରି ଶେଷରେ କହିଲା, "ସବୁ କଥା ଅସହ୍ୟ ହେଲାଣି । ଦେଖ ତ ଭାଇନା ତୁମ ଶାସ୍ତ୍ର କ'ଣ କହୁଚି ?"

ଆତ୍ରେୟ ନାଲିକଲମ, ରାଇଟିଂ ପ୍ୟାଡ୍‌ଟି ନେଇ ଅଙ୍କ କଷିବା ଆରମ୍ଭ କଲେ ।

ସେପାଖରୁ ତାଙ୍କ ପାଇଁ ପାନ ଦୁଇଖଣ୍ଡି ନେଇ ନିଶିପଦ୍ମା ପହଞ୍ଚିଲା ସେଇ ଘରେ । ନିଖିଳେଶ୍ ମନେ ମନେ ବିରକ୍ତ ହେଲେ ବି ତାକୁ କିଛି ନ କହି ଆତ୍ରେୟଙ୍କୁ ପାନ ପ୍ଲେଟ୍ ବଢ଼େଇ ଦେଲା । ଆତ୍ରେୟ ପାନ ନେବା ଅବସରରେ

ନିଶିପଦ୍ମାକୁ ଚାହିଁ କହିଲେ, ''କ'ଣ ନିଶି, ଆସିବାବେଳୁ ଦେଖୁଛି କାମରେ ଲାଗିଛ ? ବସ ଟିକେ ଆମ ପାଖରେ ।''

''ଏବେ ଆଉ କିଛି କାମ କରିବାର ନାହିଁ, ଭାଇନା ।''

ନିଶିପଦ୍ମା ଆନ୍ଦ୍ରେୟଙ୍କ ପାଖ ଚଉକିରେ ବସି କହିଲା, ''ଅନେକ ଦିନରୁ ଆପଣଙ୍କ ପାଖରେ ଏମିତି ବସି କଥା ପଦେ କହିବାର ସୁଯୋଗ ପାଇ ନାହିଁ। କିଛି ପଚାରିବା ପାଇଁ ଭାବୁଛି କେତେ ଦିନରୁ ।''

ନିଖିଳେଶ୍ ସତର୍କ ହେଲା । ଏସବୁ ନ ଶୁଣିବା ପରି ପାଖ ବହି ଥାକରୁ ବହି ଖଣ୍ଡିଏ ଉଠାଇ ଖୋଲି ଦେଖିବାରେ ମନ ଦେଲା ।

ଆନ୍ଦ୍ରେୟ କିଛି ଉତ୍ତର ନଦେଇ କାଗଜଟିରେ ମନ ଦେଇ କିଛି ଲେଖାଲେଖି କରୁଥିଲେ । ଲେଟର ପ୍ୟାଡ୍ ଉପରେ କଲମଟି ରଖିଦେବା ପରେ ଶ୍ରଦ୍ଧାରେ ପଚାରିଲେ, ''ନିଶି, କ'ଣ ହେଇଚି ? ମନ କାହିଁକି ବିଷଣ୍ଣ ? ବିଚ୍ଛିନ୍ନ ମନେ ହେଉଚ ? ବୁଝିଲ ନିଶି, ମାନସିକ ଶାନ୍ତି ବଡ଼ କଥା । ସବୁ ଥାଇ ଯଦି ସେ ସୁଖଟି ନଥିବ, ସବୁ ବ୍ୟର୍ଥ ।''

''ଆପଣ ଠିକ୍ ବୁଝିଛନ୍ତି ।'' ନିଶିପଦ୍ମା ଏତିକି କହି ଆନ୍ଦ୍ରେୟଙ୍କ କଥା ଶୁଣିବାରେ ମନ ଦେଲା ।

''ମଣିଷର ଏ ମନ ବଡ଼ ବିଚିତ୍ର ! ପାପ, ପୁଣ୍ୟ, ନ୍ୟାୟ, ଅନ୍ୟାୟ, ସବୁ ବୁଝୁଥିଲେ, ଜାଣୁଥିଲେ ବି ଅନ୍ଧ ଭାବରେ ସେ ବାରମ୍ବାର ଭୁଲ କରି ଥାଏ । ଜଘନ୍ୟ ଅପରାଧୀ କ'ଣ ବୁଝେନାହିଁ ତା'ର ଅପରାଧ ?''

''ତେବେ ସେ ଅନ୍ୟାୟ କରେ କାହିଁକି ? କିଏ ତା' ହାତରେ ଏସବୁ କରେଇ ନିଏ ? ଏ କ୍ଷେତ୍ରରେ ସର୍ବଜ୍ଞତା ଅନ୍ତର୍ଯ୍ୟାମୀ ତାକୁ ବୁଦ୍ଧି ଦିଅନ୍ତି ନାହିଁ କାହିଁକି ?'' ଅତ୍ୟନ୍ତ ଆଗ୍ରହରେ ପଚାରିଲା ନିଶିପଦ୍ମା ।

ନିଖିଳେଶ୍ ବହିରୁ ମୁହଁ ଉଠେଇ ଥରଟିଏ ନିଶିପଦ୍ମାକୁ ନିରୀକ୍ଷଣ କରି ମନକୁ ମନ ନୀରବରେ ହୁଏତ କହିଲା, 'କନ୍‌ଫେସନ୍ !'

ଆନ୍ଦ୍ରେୟ ସ୍ଥିର ଭାବରେ ନିଶିପଦ୍ମାକୁ ଚାହିଁ କହିଲେ, ''ଏ ହେଲା ପ୍ରାରବ୍ଧକର୍ମର ଭୋଗ । ସେ ମନୁଷ୍ୟକୁ ପାପ ରାସ୍ତାକୁ ନେବ ନିଶ୍ଚୟ, ଜୀବଟି ନ ଚାହିଁଲେ ବି ।''

ଏବେ କୋଠରୀରେ ଅଖଣ୍ଡ ନୀରବତା ବିରାଜମାନ କଲା । କେହି କାହାକୁ

କିଛି କହିଲେ ନାହିଁ।

ନିଖିଳେଶ୍ ମନଯୋଗ ସହ ବହି ପଢୁଥିଲା। ଆତ୍ରେୟଙ୍କ ଲେଖାଲେଖି, ନାଲିକାଳିରେ ସଂଖ୍ୟାମାନ ଲେଖି ହିସାବପତ୍ର କରିବାରେ ସେ ମନୋନିବେଶ କରିଥିଲେ କିଛି ସମୟ।

ନିଶିପଦ୍ମାକୁ କହିଲେ, "ତୁମର ଗ୍ରହମାନଙ୍କର ପୋଜିସନ୍ ଟିକେ ଦେଖେ। ଅପେକ୍ଷା କର, ନିଶି। ମୁଁ କହୁଚି। ହଁ ଶୁଣ— ବୃଷ ଲଗ୍ନ, ପଞ୍ଚମରେ ଚନ୍ଦ୍ର, ପଞ୍ଚମାଧିପତି ପଞ୍ଚମସ୍ଥ, ବୁଧ ମହାଦଶାରେ ଶୁକ୍ର ଅନ୍ତର୍ଦଶା। ଚନ୍ଦ୍ର ପ୍ରତ୍ୟନ୍ତର ଚାଲୁଥିବାରୁ ତାହା ପ୍ରେମ ବ୍ୟାପାରରେ ଜଡ଼ିତ କରିଦେବାର ଜ୍ୟୋତିଷିକ ସୂଚନା ମିଳେ।"

ନିଶିପଦ୍ମାର ମୁହଁରେ ସେଇଭଳି ଉଜ୍ଜ୍ୱଳତା, ଲାଳିତ୍ୟର ଆଭା। କଳା କଳା ଆଖି ଦୁଇଟି ସ୍ଥିର। ସେ ମୁହଁରେ ଭାବାନ୍ତରର ପରିବର୍ତ୍ତନ ମନେ ହେଲା ନାହିଁ।

ପରିବେଶର ନୀରବତାକୁ ସହଜ କରିବା ଉଦ୍ଦେଶ୍ୟରେ ହଠାତ୍ ଅନ୍ୟ ଜଣେ ଭଳି ଜୋର୍‌ରେ ହସି ଉଠିଲା ନିଖିଳେଶ୍। ସେମିତି ହସି ହସି ଆତ୍ରେୟଙ୍କୁ କହିଲା, "ଏମିତି କ'ଣ ସବୁ ପ୍ରଳାପ କରୁଚ? ଭାଙ୍ଗ ଖାଇ ଆସିଚ କି?"

ଆତ୍ରେୟ ପାଣି ଗ୍ଲାସଟିଏ ଆଣିବା ପାଇଁ ନିଶିପଦ୍ମାକୁ କହିଲେ। ନିଖିଳେଶ୍ ହସ ବନ୍ଦ କରି ଆସ୍ତେ ପଚାରିଲା, "କ'ଣ ଭାଇନା, ଏସବୁ ସତ?"

"ଅଧିକ କହିବାର ନାହିଁ।" ଆତ୍ରେୟଙ୍କ ସଂକ୍ଷିପ୍ତ ଉତ୍ତର।

ଯାପରେ ସେ ଦୁହେଁ ପରସ୍ପରକୁ ଚାହିଁ ରହିଥିଲେ କିଛି ସମୟ।

ତଥାପି ଆତ୍ରେୟ ଲେଟର ପ୍ୟାଡ୍‌ର କାଗଜରେ ଅଂକ କଷିବାରେ ବ୍ୟସ୍ତ ରହିଲେ।

ତାଙ୍କଠାରୁ ଅଧିକ କିଛି ଶୁଣିବାର ଆଶା ନେଇ ଅପେକ୍ଷା କରିଥାଏ ନିଖିଳେଶ୍।

ଝରକା ବାହାରେ ବଗିଚାର ଫୁଲ, ପତ୍ରରୁ ଖରା ଝାପ୍‌ସା ହେଲାଣି। ମେଘମୁକ୍ତ ଆକାଶ। ଋତୁ ପରିବର୍ତ୍ତନର ଆଭାସ।

ଏ ବେଳରେ ନିଶିପଦ୍ମା ବାହାରେ କାହା ଅପେକ୍ଷାରେ? ସ୍ୱଭାବଟା ଏମିତି ଯେ କ'ଣ ଖେଳୁଛି ସେ ମନରେ, ଜାଣିବା ମୁସ୍କିଲ୍।

ଗତ ସପ୍ତାହରେ ତିନି, ଚାରିଦିନ ସେ ଦିଲ୍ଲୀରେ ରହିଲା। ଝିଅ କହୁଥିଲା, "ଅଭିଷେକ ଅଙ୍କଲ ପ୍ରତିଦିନ ଆସୁଥିଲେ। ହୋଟେଲ ଖାଇବା ଭଲ ନୁହେଁ

ତ। ରାତିରେ ପ୍ରାୟ ଏଇଠି ଖାଆନ୍ତି।''

ଅଭିଷେକ ଆସେ! ବିଳମ୍ବ ରାତି ପର୍ଯ୍ୟନ୍ତ ବଗିଚାରେ ଶାନ୍ତ ପରିବେଶରେ ବସି ନିଶିପଦ୍ମା, ଅଭିଷେକଙ୍କର କଥା ଶେଷ ହୁଏ ନାହିଁ। ଅଭିଷେକ କେଉଁ ସ୍ୱପ୍ନରାଜ୍ୟର ବାର୍ତ୍ତା ଦିଏ ନିଶିପଦ୍ମାଙ୍କୁ!

ହିମାଳୟ ପାଖ ପାହାଡ଼ିଆ ସହରଟିରେ ରହନ୍ତି ତା'ର ସ୍ତ୍ରୀ, ପିଲା। ସେଇ ପାଖରେ ବଦ୍ରିନାଥ, କେଦାରନାଥ ରାସ୍ତାର କୌଣସି ଏକ ପାର୍ଶ୍ୱକୁ ସଂଯୁକ୍ତ କରୁଥିବା ବ୍ରିଜ୍‌ଟିର ନିର୍ମାଣ କାର୍ଯ୍ୟରେ ସହାୟତା କରେ ଇଂଜିନିୟର୍ ଅଭିଷେକ୍।

ସରକାରୀ କାର୍ଯ୍ୟ ଏବଂ ଗାଁରେ ବାପା, ମା'ଙ୍କୁ ଦେଖି ଆସିବା ନାଁରେ ଦଶଦିନ ହେବ ଡ଼ାକବଙ୍ଗଳାରେ ବସିଚି ଏଠି!

ନିଖିଳେଶ୍‌କୁ କ୍ରମଶଃ ପ୍ରତିଟି ବିଷୟ ସ୍ପଷ୍ଟ ଦେଖା ଯାଉଥିଲା।

''ବାପା, ଥରେ ଚାଲ ହିମାଳୟ ଦେଖିଆସିବା।'' ପୁଅ ଜିଦ୍ କରେ।

ଝିଅ କହେ, ''ସିନିକ୍ ବିଉଟି ମୁଁ ଦେଖିବାକୁ ଚାହେଁ। ତୁମେ ଯିବ ତ ମା'? ଅଭିଷେକ ଅଂକଲ ସବୁଆଡ଼େ ବୁଲେଇ ଦେବେ କହିଛନ୍ତି।''

ନିଶିପଦ୍ମାର ଆଗ୍ରହ ଦେଖିବାର କଥା। ଅଥଚ ଅନ୍ୟ ଯେଉଁଆଡ଼େ ଡ଼ାକ, ଏବେ ତା'ର ନାସ୍ତିଭାବ।

''ନା ଥାଉ। ସେଠି ଜନ୍ମଦିନର ହୋହଲ୍ଲା, ଆର୍ଟିଫିସିଆଲ୍ କଥାବାର୍ତ୍ତା। ଫରମାଲ୍ କାରବାର, ଭାରୀ କଷ୍ଟ ମତେ।''

''ଆମେ ସମସ୍ତେ ଯିବୁ। ତୁମେ ଯିବ ନାଇଁ?''

ନିଖିଳେଶ୍ ବାଧ୍ୟ କଲା ନିଶିପଦ୍ମାକୁ।

''ଥାଉ ବାପା, କାହିଁକି ଯିବାକୁ କହୁଚ? ଏକ୍‌ଜିବିସନ୍ ଯାଇ ମା' ଏମିତି ବ୍ୟସ୍ତ ହେଇ ପଡ଼ିଲେ ସେଦିନ! ତାଙ୍କ ମୁଣ୍ଡ ବିନ୍ଧିଲା। ଖୁବ୍ ରହଜି ହୋଇଥିଲା ତ।''

ସେଇ ରାତିରେ କିନ୍ତୁ ଅଭିଷେକ ଆସିଥିଲା। ସେମାନେ ଘରକୁ ଫେରିଆସିବା ପର୍ଯ୍ୟନ୍ତ ରହିଲେ ବି ନିଖିଳେଶ୍‌କୁ ଖୋଜି ନ ଥିଲା ଅଭିଷେକ। ସେ ଯିବା ପରେ ପରେ ନିଶିପଦ୍ମାର ଆଖି ଦୁଇଟି ସ୍ୱପ୍ନମୟ ହେଇଉଠିଥିଲା।

ଏକା ଏକା ଏମିତି ଅଂଧାରଟାରେ ଛାତରେ ମୂର୍ତ୍ତି ଭଳି ଠିଆହୋଇ ରହିଥିବା ନିଶିପଦ୍ମାକୁ ଦେଖି ବିସ୍ମୟରେ ହତବାକ୍ ହେଲା ନିଖିଳେଶ୍।

"ଶୀତ ରାତି। ସମସ୍ତେ ଶୋଇଗଲେଣି। ଏମିତି ଅଂଧାରରେ ଏଠି କ'ଣ କରୁଛ ?"

ବିରକ୍ତିରେ ଏମିତି କେତେଟା କଥା ପଚାରିବାକୁ ଯାଇ ନିଜକୁ ସଂଯତ କରେ ନିଖିଳେଶ୍।

"ତୁମେ ଶୋଇନ ଏ ଯାଏ ?"

ନିଶିପଦ୍ମା ଆଶ୍ଚର୍ଯ୍ୟରେ ପଚାରେ। 'ଓଃ ଭାବିଥିଲି, ନିଦ ହୋଇଯାଇଚି।' ନିଖିଳେଶ ମନେ ମନେ ଚିନ୍ତା କଲା। ଏ କେତେ ଦିନ ହେବ ଏ ସବୁ ଯେମିତି ଅଭ୍ୟାସରେ ପଡ଼ି ଯାଇଚି। ସେଇଥିପାଇଁ ଆତ୍ରେୟଙ୍କୁ ପଚାରିବା ଏକାନ୍ତ ଜରୁରୀ ମନେକଲା ନିଖିଳେଶ୍।

— ଶୁଣୁଚ ?

— କ'ଣ ହେଲା ? ଶୋଇନ ଏ ଯାଏ ? ଦେହ ଖରାପ ହବ।

ନିଖିଳେଶ୍ ଆଖିରେ ନିଦ ଭର୍ତ୍ତି। ସେମାନେ ଏକା ବିଛଣାରେ ଶୋଇଥାଆନ୍ତି।

ନିଶିପଦ୍ମା ବିଛଣାରେ ଉଠି ବସିଛି। ଧୀରେ କହିଲା— ସବୁ ଅସାର। କୋଉଠି ସୁଖ ଶାନ୍ତି ନାହିଁ, ଏ ସଂସାର, ପରିବାର...।

କ'ଣ ହେଲା ? ଆମେ କେହି ନୁହଁ ? ସ୍ୱାମୀ, ଝିଅ, ପୁଅ, ଏ ପରିବାର ତୁମ ପାଖରେ ତୁଚ୍ଛ। କିନ୍ତୁ ସେ ସ୍କାଉଣ୍ଡ୍ରେଲ୍, ଚରିତ୍ରହୀନ ଅଭିଷେକ ତୁମର ସବୁକିଛି !

କହିବା ପାଇଁ ଚିନ୍ତାକରି ମଧ କହିପାରୁ ନାହିଁ ନିଖିଳେଶ୍। ଆବଦ୍ଧ ଅଭିଯୋଗ। ନିଦରେ ଶୋଇ କିଛି ନ ଶୁଣି ପାରୁଥିବା ମିଥ୍ୟାର ପରିସମାପ୍ତି ଘଟିଛି ଏବେ?

ତେବେ... ତେବେ ନିଖିଳେଶ୍ କ'ଣ ଏମିତି ବୋକା ? ସବୁ ଜାଣି, ସବୁ ଦେଖି ଚୁପ୍ ରହିଯିବ ?

ଆତ୍ରେୟଙ୍କର ଅନ୍ୟକାମ ଅଛି। 'ପରେ ଦିନେ ଆସି ଭଲରେ କଥାବାର୍ତ୍ତା କରିବା' କହି ସେ ବିଦାୟ ନେଲେ।

ନିଶିପଦ୍ମାର ଦେଖାନାହିଁ। ଛାତରେ ନା ବଗିଚାରେ ? ଏଇଠି ବୁଲୁଥିଲା, କୁଆଡ଼େ ବାହାରିଗଲା ?

ଅଭିଷେକ ପାଇଁ ଡ଼ାକବଙ୍ଗଳା ଚାଲିଚାଲି ଯିବା ବାଟ ନୁହଁ। ତେବେ ଯିବାକୁ ଇଚ୍ଛାକଲେ ଅସୁବିଧା କ'ଣ ?

ଖୋସାମତ କଲେ ବି ଘରୁ ବାହାରୁ ନାହିଁ। ଅଥଚ ଏକା ଏକା ଏମିତି ! ଏ ଅସହ୍ୟକର ପରିସ୍ଥିତିର ପରିସମାପ୍ତି ହେଉ।

ପିଲାମାନେ ଘରେ ନାହାଁନ୍ତି।

ପଛ ପାଖରେ ରହୁଥିବା ପିଥନ୍‌କୁ ଘର ଜଗିବାକୁ କହି ଗାଡ଼ି ନେଇ ବାହାରିଗଲା ନିଖିଳେଶ୍‌।

ନା, ବେଶୀ ଦୂର ଯାଇ ନାହିଁ ନିଶିପଦ୍ମା। ନଈକୂଳରେ କିଛିବାଟ ଯାଇ ସେଇ ନିର୍ଜନ ସ୍ଥାନଟିରେ ସ୍ୱପ୍ନାବିଷ୍ଟ ହୋଇ ବସି ରହିଥିଲା ସେ।

ଦୂରରେ ଗାଡ଼ି ରଖି ନିଶିପଦ୍ମାର ଅଜାଣତରେ ତାକୁ ଚାହିଁ ରହିଲା ନିଖିଳେଶ୍‌। ସେଇ ଉଜ୍ଜ୍ୱଳ ଆଖି ଦୁଇଟି କ'ଣ ଦେଖୁଛି ସେ ସ୍ଥିର ଜଳରାଶିରେ ?

ଆନ୍ଦ୍ରେୟଙ୍କ ପାଖରେ ସବୁ ଶୁଣିବା ପରେ ମଧ୍ୟ ତା'ର ଆଦୌ ଜିଜ୍ଞାସା ନ ଥିଲା। ସେତେବେଳେ ବି ଏମିତି ଭାବ।

ନିଶିପଦ୍ମା ଏମିତି ବସି ରହିଛି କାହିଁକି ? ତା'ର ଦୃଷ୍ଟି ସତେକି ଦିଗ୍‌ବଳୟର ଅପରପାର୍ଶ୍ୱର ସଂଧାନ ନେଉଥିଲା। ତା'ର ଆତ୍ମା ଅନ୍ୟ କାହା ସହ କଥୋପକଥନରେ ବ୍ୟସ୍ତ ରହିଛି। ଦେହ ତ ନିମିତ୍ତ ମାତ୍ର। କ'ଣ ଅଛି ଏ ମାଟି କଣ୍ଢେଇରେ ?

ପାଖ ମନ୍ଦିରରେ ସଂଧ୍ୟା ଆଳତୀର ଶଂଖ, ଘଣ୍ଟ, ବାଦ୍ୟ ନିଶ୍ୱନ୍ ନଈକୂଳରେ କଂପନ ସୃଷ୍ଟିକଲା।

ତଥାପି ଅଂଧାରରେ ଧ୍ୟାନରତ ସନ୍ନ୍ୟାସିନୀଟିଏ ଭଳି ବସିଥିଲା ସେ। ନିଖିଳେଶ୍‌ର ହାତ ପାପୁଲି ଦୁଇଟି ଆପେ ଆପେ ଯୋଡ଼ି ହୋଇ ଆସିଲା ନିଶିପଦ୍ମା ଉଦ୍ଦେଶ୍ୟରେ।

□ □

# ଜେରୁଜେଲମ୍‌ର ସନ୍ଧ

ସୁଲେମାନ୍ ରୋଡ୍, ସେଣ୍ଟ୍ରାଲ୍ ପୋଷ୍ଟଅଫିସ୍ ଛକ। ହୋଟେଲ୍ ଗୋଲଡେନ୍ ଭ୍ୟାଲି।

ସୁପ୍ରିୟା ଠିକଣାଟି ଭଲଭାବେ ପଢ଼ିନେଇ ପର୍ସରେ ରଖିଲା। ସେୟାର୍ ଟ୍ୟାକ୍ସିର ଡ୍ରାଇଭର୍‌କୁ ବୁଝେଇ ଦେଲା। ଇଂରେଜୀ କହୁଥିବା ଡ୍ରାଇଭରଟି ସବୁକଥା ଶୁଣିଲା, ଉତ୍ତରଦେଲା ନାହିଁ। କିନ୍ତୁ ଗାଡ଼ିରେ ବସାଇବା ବେଳେ 'ୱେଲ୍‌କମ୍ ମ୍ୟାଡ଼ମ୍ ହିନ୍ଦ୍' କହି ବେଶ୍ ସମ୍ମାନର ସହ ତା'ର ଏୟାର୍ କଣ୍ଡିସନ୍‌ଡ୍ କାର୍‌ର ଡ଼ୋର୍ ଖୋଲି ଧରିଲା। ଅନ୍ୟ କେହି କେହି ଆରୋହୀ ତା' ଆଡ଼େ ଥରେ ଚାହିଁ ଦେଇ ମୁହଁ ଫେରାଇ ନେଲେ।

ବାସ୍ତବିକ୍ କନଫରେନ୍‌ସ ଶେଷ ହେବା ପରେ ପରେ ସେ ଯଦି ସାହସର ସହିତ ବାହାରି ଆସି ନଥାନ୍ତା, ତେବେ ଏ ସମୟ ସୁଯୋଗ କେବେ ବି ମିଳି ନଥାନ୍ତା। ତେଲ୍-ଆଭିଭ୍ ଆସି ସେ ଜେରୁଜେଲମ୍, ବେଥଲହାମ୍ ମାଟିରେ ପାଦ ଦେବ ନାହିଁ, ଯା' କିମିତି ହେବ? ଏଭଳି ଅଭାବବୋଧକୁ ପୂରଣ କରାଯାଇପାରେନା କେବେ।

ଦୂର ପାହାଡ଼, ୟୁରୋପ୍‌ର 'କଣ୍ଟ୍ରିହାଉସ୍' ଢ଼ାଞ୍ଚାରେ ତିଆରି, ଚିତ୍ରରେ ଅଂକାଯାଇଥିବା ଭଳି ଘର, ସବୁଜ ଉପତ୍ୟକା ଖୁବ୍ ସୁନ୍ଦର ଦେଖାଯାଉଥିଲା। କାର୍‌ର କାଚ ଝରକା ଦେଇ ବାହାରକୁ ଚାହିଁ ରହିଥିଲା ସୁପ୍ରିୟା। ଅଲିଭ୍ ଗଛ, ଅନ୍ୟାନ୍ୟ ବହୁ ପ୍ରକାର ବୃକ୍ଷର ତୋରଣ ରାସ୍ତାର ଦୁଇ ପାର୍ଶ୍ୱରେ ତା'କୁ ସ୍ୱାଗତ ଜଣାଉଥିଲେ।

ଜଣେ ଅନିନ୍ଦ୍ୟା ସୁନ୍ଦରୀ ଇହୁଦୀ ତରୁଣୀ ଡ୍ରାଇଭର୍‌କୁ ଗାଡ଼ି ରଖିବାକୁ ହୁଏତ କହୁଥିଲେ। ସେଣ୍ଟ୍ରାଲ୍ ବସ୍ ଷ୍ଟେସନ୍‌ରେ ହିଁ ଗାଡ଼ି ରଖିବା ନିୟମ।

ତା' ପୂର୍ବରୁ ରଖିହେବ ନାହିଁ, ଏକଥା ଜାଣିଥିଲେ ମଧ୍ୟ ସୁପ୍ରିୟା ଡ୍ରାଇଭରକୁ ଅନୁରୋଧ କରିଥିଲା। ଏବେ ସେ ଝିଅକୁ ରାସ୍ତାରେ ଛାଡିବାକୁ ଡ୍ରାଇଭର୍ ନାରାଜ।

ଏକାକିନୀ ସୁପ୍ରିୟା। ଦିନ ଦ୍ୱିପ୍ରହର ଖରାରେ ଚାଲି ଚାଲି, ବସ୍‌ଷ୍ଟାଣ୍ଡରୁ ସମ୍ଭବତଃ ଦୁଇକିଲୋମିଟର ରାସ୍ତା ହୋଇପାରେ! ଲୋକାଲ୍ ଟ୍ୟାକ୍ସିଙ୍କ ଚାର୍ଜ ଅଧିକ ଶୁଣିଛି।

ସୁପ୍ରିୟା ଚିନ୍ତାରୁ ଛିଟିକି ପଡ଼ିଲା। ଡ୍ରାଇଭର୍ ତାକୁ କ'ଣ କହୁଛି, ''ଓହ୍ଲେଇ ଯାଆନ୍ତୁ, ମ୍ୟାଡ଼ମ୍। ପୋଷ୍ଟଅଫିସ୍ ପରେ ତିନି ଚାରିଟା କୋଠା ଛାଡି ଗୋଲଡ଼େନ୍ ଭ୍ୟାଲି... ।''

ଟ୍ୟାକ୍ସିବାଲାର ତରବରରେ ଅଳ୍ପ କେତେ ପଦ କଥା। ଅନ୍ୟମାନଙ୍କର ଆତଙ୍କିତ ଦୃଷ୍ଟି। କେଉଁଆଡେ ନ ଚାହିଁ, କାଂଧରେ କିଟ୍‌ବ୍ୟାଗ୍ ଖଣ୍ଡିକ ଝୁଲାଇ, ଗାଡ଼ିରୁ ଓହ୍ଲାଇ ଶୀଘ୍ର ଶୀଘ୍ର ରାସ୍ତାରେ ଆଗେଇବାରେ ଲାଗିଲା ସୁପ୍ରିୟା।

ଥ୍ୟାଙ୍କ୍ ଗଡ୍, ବସ୍‌ଷ୍ଟାଣ୍ଡ ବ୍ୟତୀତ ରାସ୍ତାରେ ଗାଡ଼ି ରଖିହବ ନାହିଁ, ଏହି କଡ଼ାକଡ଼ି ନିୟମ ସତ୍ତ୍ୱେ ଏବଂ ଇହୁଦୀ ଝିଅଟିକୁ ରୁକ୍ଷ ଭାବରେ ମନା କରିଥିବା ଡ୍ରାଇଭରର ଏଭଳି ହୃଦୟବତ୍ତା! ସୁପ୍ରିୟା ଆଶ୍ୱସ୍ତ ହେଲା, ସେ ତେବେ ଜେରୁଜେଲମ୍‌ରେ ପହଞ୍ଚିଯାଇ ପାରିଛି। ଏହି ପବିତ୍ର ମାଟିକୁ ହାତରେ ସ୍ପର୍ଶ କରି ଶିହରିତ ହେଲା ସୁପ୍ରିୟା।

କ୍ରୁଶବିଦ୍ଧ ଯୀଶୁଙ୍କର ରକ୍ତଭିଜା ଏ ମାଟି! ଇସ୍‌ଲାମ ଧର୍ମଗୁରୁ ମହମ୍ମଦ୍‌ଙ୍କର ସ୍ୱର୍ଗକୁ ଯିବା ରାସ୍ତା!

ଜେରୁଜେଲମ୍‌ର ଆକାଶକୁ ଚାହିଁଲା ସୁପ୍ରିୟା। ଜୁନ୍ ମାସର ମଧ୍ୟାହ୍ନ, ଦିନ ସାଢେ ବାରଟା। ଅଥଚ ବାହାରେ ସେଭଳି କିଛି ଉତ୍ତାପ ନାହିଁ। ରାସ୍ତାରେ ଜନଗହଳି।

ଡ୍ରାଇଭରର କହିବା ଅନୁସାରେ ବାମ ପାର୍ଶ୍ୱ ରାସ୍ତାରେ ଆଗକୁ ଚାଲିବାକୁ ଆରମ୍ଭ କଲା ସୁପ୍ରିୟା। କାନ୍ଧରେ ଅଳ୍ପ ଓଜନର କିଟ୍‌ବ୍ୟାଗ୍ ଖଣ୍ଡିକ। ହାତରେ ପାଣି ବୋତଲ।

ସାମନାରେ ହୋଟେଲ୍ ଗୋଲଡ଼େନ୍ ଭ୍ୟାଲି। ସୁପ୍ରିୟା ନିଶ୍ଚିନ୍ତ ନିଶ୍ୱାସ ନେଇ ପାହାଚରେ ଉଠିବାକୁ ଆରମ୍ଭ କରିଛି।

ହଠାତ୍ ଏମିତି କ'ଣ ହେଲା! କଳାକୋଟ୍, କଳାଟୋପି ପିନ୍ଧିଥିବା ଜଣେ ଯୁବକକୁ ଅନ୍ୟ ଦୁଇଜଣ ରାସ୍ତାରେ ଠେଲି ତଳେ ପକେଇ ଦେଇ ମାଡ଼ ମାରିବା ଆରମ୍ଭ କରିଛନ୍ତି!

ସୁପ୍ରିୟାକୁ ଭିତରକୁ ଟାଣିନେଇ କିଏ ଜଣେ ଗ୍ଲାସ୍‌ଡ଼ୋର୍ ବନ୍ଦ କରିଦେଲା। ବାହାରେ ସେଭଳି ଗଣ୍ଡଗୋଳ ଲାଗିରହିଛି। ଏସବୁ କିଛି ବୁଝି ନ ପାରି ସେଇ ବନ୍ଦ ଗ୍ଲାସ୍ ଡ଼ୋର୍ ଦେଇ ସେ ବାହାରକୁ ଚାହିଁ ରହିଥିଲା।

ଅଜଣା ବ୍ୟକ୍ତି ଦୁଇଟିଙ୍କ ତୁଣ୍ଡରେ ତା'ର ନାମ ଉଚ୍ଚାରଣ।

—ଇୟେସ୍, ସୁପ୍ରିୟା ଦାଶ। ଏସବୁ କ'ଣ ଚାଲିଛି ବାହାରେ ? —ଏମିତି କିଛି ପଚାରିବାକୁ ଯାଇ ସେ ପ୍ରଥମେ ବୃଦ୍ଧଦ୍ୱୟଙ୍କୁ ତା'ର ପରିଚୟ ଦେଲା ଏବଂ ମିଷ୍ଟର ଆନ୍‌ସାରୀଙ୍କୁ ମନେ ମନେ କୃତଜ୍ଞତା ଜଣାଇଲା।

—ଏଠି କିଛି ଅସୁବିଧା ହେବ ନାହିଁ। ବି କମ୍ଫର୍ଟବେଲ, ମ୍ୟାଡ଼ମ୍। ମିଷ୍ଟର ଆନ୍‌ସାରୀଙ୍କ ଅତିଥି ଆପଣ। ସେ ଆମର ବନ୍ଧୁ। ଏଇ ଅଳ୍ପ ସମୟ ପୂର୍ବେ ଆପଣ ଆସିଛନ୍ତି କି ନା ସେ ଟେଲିଫୋନ୍‌ରେ ବୁଝୁଥିଲେ। କଥା କହିବେ କି ତାଙ୍କ ସଙ୍ଗେ ?

—ଥ୍ୟାଙ୍କ୍ ଇଉ, ଟିକିଏ ପରେ। ଏବେ ଥାଉ। ଏବେ ସେ କାହାକୁ କଥା କହିବ ନାହିଁ। କୋଠରୀ ବନ୍ଦ କରି ନିଶ୍ଚିନ୍ତରେ ଗାଧୋଇବା ଘରେ ପଶିଲା ସୁପ୍ରିୟା। ଥଣ୍ଡାପାଣିରେ ଧୁଆଧୋଇ ହୋଇ ଆସିବା ପରେ ବିଛଣାରେ ଶାନ୍ତ ଭାବରେ ପଡିରହିଲା କିଛି ସମୟ।

ତେଲ୍-ଆଭିଭ୍‌ରୁ ଜେରୁଜେଲମ୍। ସେଇ ଶାନ୍ତ ସୁନ୍ଦର ରାସ୍ତାଟି ଅତିକ୍ରମ କରି ପ୍ରକୃତିର ଅନୁପମ, ସ୍ୱର୍ଗରାଜ୍ୟ ଜେରୁଜେଲମ୍‌ରେ ପହଞ୍ଚି ସୁପ୍ରିୟା ପ୍ରଥମେ ଆବିଷ୍କାର କଲା ଅଶାନ୍ତ ମନୁଷ୍ୟଟିର ଆକ୍ରୋଶମୂଳକ ଆକ୍ରମଣ। ଯା'ର କ'ଣ ଶେଷ ନାହିଁ ? ଚିରକାଳ ଚାଲିଥିବ ହିଂସା, ରକ୍ତପାତର ତାଣ୍ଡବ !

ପାଖ ଟେବୁଲ୍‌ରେ ଟେଲିଫୋନ୍ ବାଜୁଛି। ସୁପ୍ରିୟା ପରବର୍ତ୍ତୀ କାର୍ଯ୍ୟକ୍ରମର ଯୋଜନା କରୁଥିଲା। ଡ଼ାଏରୀ, କଲମ ବିଛଣାରେ ରଖିଦେଇ ତରତରରେ ଫୋନ୍ ଉଠେଇ ନେଲା।

''ୱେଲ୍‌କମ୍, ମ୍ୟାଡ଼ମ୍। ଆନ୍‌ସାରୀ କହୁଛି। ସବୁ ଠିକ୍ ଅଛି ତ ?''

''ଥ୍ୟାଙ୍କ୍ ୟୁ, ମିଷ୍ଟର ଆନ୍‌ସାରୀ। ଖୁବ୍ ଭଲ।''

''ଭାବିଥିଲି ଆସି ଆପଣଙ୍କ ଭଲମନ୍ଦ ବୁଝିଯିବି।''

''କାହିଁକି କଷ୍ଟ କରିବେ ? ଆପଣଙ୍କ ବନ୍ଧୁମାନେ ବେଶ୍ କେୟାର୍ ନେଉଛନ୍ତି। ଆଦୌ ଅସୁବିଧା ନାହିଁ। ଦେଖା ହବ ନିଶ୍ଚୟ।''

''ତେବେ ସଂଧ୍ୟାରେ...''

''କୋଉଠି ରହୁଛନ୍ତି ଆପଣ ? ଇଣ୍ଡିଆନ୍ ହସ୍‌ପିସ୍ ମୁଁ ଦେଖିବାକୁ ଚାହେଁ।''

"ଓ ସିଓର। ମୁଁ ନେଇ ଆସିବି ଆପଣଙ୍କୁ। ଖୁବ୍ ପାଖରେ। ସୁଲେମାନ୍ ରୋଡ୍‌ରେ ଛକରେ ଯେଉଁଠି ଆପଣ ହୋଟେଲ୍‌ପାଇଁ ଟର୍ନ ନେଲେ, ତା'ର ଅପୋଜିଟ୍‌ରେ ଓଲ୍‌ଡ୍ ସିଟି ପାଇଁ ଗେଟ୍ ରହିଛି। ସେଇ ଗେଟ୍‌ରେ ପଶିବା ପରେ ପାଖରେ ଆମ ହସ୍‌ପିସ୍।"

"ଆପଣ ଅନେକ କରିଛନ୍ତି, ବ୍ୟସ୍ତ ହେବେ ନାହିଁ। ମୁଁ ଅପରାହ୍ନରେ ବାହାରିବି ବୁଲିବାକୁ। ବିଶେଷ ଦୂର ନୁହଁ। ଚାଲିଚାଲି ଯିବି ଡ଼ାମସ୍‌କସ୍ ଗେଟ୍ ପର୍ଯ୍ୟନ୍ତ। ଶୁଣିଛି ସଂଧ୍ୟାଟା ସେଠି ଖୁବ୍ ସୁନ୍ଦର।"

"ପାଖରେ ଅଛି ଶାନ୍ତିର ପ୍ରତୀକ ବଡ଼ ଅଲିଭ୍ ଗଛ— ଅନେକ ପୁରାତନ ସ୍ମୃତି। ଆପଣଙ୍କୁ ଭଲ ଲାଗିବ ଜାଗାଟା। ବେଶୀ ଡ଼େରି କରିବେ ନାହିଁ, ଶୀଘ୍ର ଫେରିଆସିବେ। ମୁଁ ଅପେକ୍ଷା କରିଥିବି।"

ମିଷ୍ଟର ଆନ୍‌ସାରୀ ରିସିଭର୍ ରଖିଦେଲେ।

ତେଲ୍-ଆଭିଭ୍‌ରେ ଆନ୍‌ସାରୀଙ୍କ ଟେଲିଫୋନ୍ ସଂଗ୍ରହ କରି ତାଙ୍କୁ ପୂର୍ବରୁ ଫୋନ୍ ନ କରିଥିଲେ ଅନ୍ତତଃ ଦିନକୁ ଚାଳିଶ ଡ଼ଲାର୍‌ର ଏହି ହୋଟେଲଟିରେ ତା' ପାଇଁ ରୁମ୍‌ଟି ବନ୍ଦୋବସ୍ତ ହୋଇ ପାରିନଥାନ୍ତା !

ଭଦ୍ରଲୋକଙ୍କ ପରିଚୟ ଇଣ୍ଡିଆନ୍ ହସ୍‌ପିସ୍‌ର ଡ଼ାଇରେକ୍ଟର ! ଅଥଚ ଏକା ଆସିଥିବା ସୁପ୍ରିୟା ପାଇଁ ସେଠାରେ ରହିବାର ବନ୍ଦୋବସ୍ତ ତ ସୁବିଧାରେ ହୋଇପାରିଥାନ୍ତା ! ଅଯଥାରେ ଦିନକୁ ଚାଳିଶ ଡ଼ଲାର୍ ଅପବ୍ୟୟ। ସେତକ ସଞ୍ଚି ଅନ୍ୟ ଆଡ଼େ ବୁଲାବୁଲିରେ ଖର୍ଚ୍ଚ କରିପାରନ୍ତା ସେ।

ସବୁକଥା ବେଶ୍ ଅଦ୍ଭୁତ ଲାଗୁଥିଲା ତାକୁ। ଜଣେ ଭାରତୀୟ, ବେଶ୍ ସ୍ନେହୀ, ମେଳାପି, କଥାବାର୍ତ୍ତାରେ ନିଜ ନିଜ ଭାବ, ଅଥଚ ଥରେ ତାଙ୍କୁ ନ ଦେଖିବା ପର୍ଯ୍ୟନ୍ତ ଆନ୍‌ସାରୀଙ୍କ ସଂପର୍କରେ କୌଣସି ଭିନ୍ନ ମତ ପୋଷଣ କରିବା ହୁଏତ ଉଚିତ ହେବନାହିଁ। ସୁପ୍ରିୟା ନିଜ ଚିନ୍ତାକୁ ସୁସଂଯତ କଲା।

ହୋଟେଲରୁ ବାହାରି ଧୀରେ ଧୀରେ ଡ଼ାମାସ୍‌କସ୍ ଗେଟ୍ ଆଡ଼େ ବାହାରି ଗଲା ସୁପ୍ରିୟା। ଗେଟ୍ ଭିତରକୁ ଗଲେ ଅନ୍ୟ ଏକ ସହର। ଦୋକାନ, ବଜାର, ରହିବା ଘର, ବିଭିନ୍ନ ଦେଶର ହସ୍‌ପିସ୍ ବା ଧର୍ମଶାଳା। ଚତୁର୍ଦ୍ଦିଗକୁ ବିସ୍ତୃତ ଅନ୍ୟ ଏକ ଇଲାକା। ହାତରେ ଧରିଥିବା ମ୍ୟାପ୍ ଅନୁସାରେ ସ୍ତବ୍ଧ ହୋଇ ଠିଆ ହେଲା ସୁପ୍ରିୟା ସେଇ ସଂକୀର୍ଣ୍ଣ ଉଠାଣିଆ ଗଳି ରାସ୍ତାଟି ପାଖରେ !

ଭାୟା ଡ଼ୋଲୋରସ୍ ! ପ୍ରଭୁ ଯୀଶୁଙ୍କର କାଂଧରେ କ୍ରସ୍‌ଧରି ଯାଉଥିବାର

ସ୍ମୃତି ଜୀବନ୍ତ ହୋଇ ଉଠିଲା ସେଇ ମୁହୂର୍ତ୍ତରେ !

ସୁପ୍ରିୟା ଫେରିଆସିଲା ଡ଼ାମାସ୍କସ୍ ଗେଟ୍ ପାଖକୁ। ଅପରାହ୍ନ ବେଶ୍ ଉଜ୍ଜ୍ୱଳ। ବାହାର ରାସ୍ତାର କୋଳାହଳରୁ ଦୂରେଇ ଆସିଲେ ବସିବା ପାଇଁ ସ୍ଥାନଟି ସୁନ୍ଦର। ଆକାଶରୁ ନୀଳ, ନାଲି ରଂଗ ପୋଛିଦେଇ ରାତି ତା'ର କଳା ପଣତ ଛୁଆଇଁ ଆଣିଛି। ଗହଳ ବୃକ୍ଷରାଜିର ସବୁଜିମା କୃଷ୍ଣବର୍ଣ୍ଣଧାରଣ କରୁଛି। ଆଲୋକମାଳାରେ ସୁସଜ୍ଜିତ ଡ଼ାମାସ୍କସ୍ ଗେଟ୍।

ସୁପ୍ରିୟା ଫେରିବାକୁ ଆରମ୍ଭ କଲା। ଆଗରେ ସୁସ୍ପଷ୍ଟ ଆନ୍‌ସାରୀ କହିଥିବା ପୋଷ୍ଟଅଫିସ୍ ଛକରେ ଓଲ୍‌ଡ୍ ଜେରୁଜେଲମ୍‌ର ପୁରୁଣା ଗେଟ୍।

ଅଦ୍ଭୁତ ଏକ ଦୃଶ୍ୟ ! ଆରବୀୟ ତରୁଣଟି କ'ଣ ପାଗଳ ହୋଇଯାଇଛି ?

ରାସ୍ତାର ଏକ ପାର୍ଶ୍ୱରେ ଥିବା ନୂଆ କାର୍‌ଟିକୁ ଖଣ୍ଡିଏ ବାଡ଼ିରେ ଏପରି ବାଡ଼ାବାଡ଼ି କରି ଭାଙ୍ଗିବାର ଚେଷ୍ଟା କାହିଁକି ? ବୁଦ୍ଧିଜ୍ଞାନଥିବା ମଣିଷଟିଏ ଏମିତି ନୃତ୍ୟଭଂଗୀରେ ବିଧା-ଗୋଇଠା ମାରିବା, ଏଭଳି କାର୍ଯ୍ୟ କେବେ କରିବ ନାହିଁ !

—ଆସନ୍ତୁ ମ୍ୟାଡ଼ମ୍, ମୁଁ ଆନ୍‌ସାରୀ। ସୁପ୍ରିୟାକୁ ଏମିତି ଭୟଭୀତ, ଆଶ୍ଚର୍ଯ୍ୟ ଭାବନେଇ ରାସ୍ତା ପାର୍ଶ୍ୱର ଉନ୍ମତ ତରୁଣଟିକୁ ଚାହିଁ ରହିଥିବାର ଦେଖି ଆନ୍‌ସାରୀ ଆଦୌ ବିଚଳିତ ନ ହୋଇ କହିଲେ, ''ଏସବୁ କିଛି ନୁହଁ।''

ଲମ୍ବା, ଦୁର୍ବଳ ସ୍ୱାସ୍ଥ୍ୟ, ଗୌରବର୍ଣ୍ଣ, ଜଣେ ସଂଭ୍ରାନ୍ତ ବୃଦ୍ଧ। ହାତରେ ଟର୍ଚ୍ଚଟିଏ। ସୁପ୍ରିୟାକୁ ଆସିବାକୁ କହି ଚାଲିବାରେ ଲାଗିଲେ ସେ। ଏ ସବୁ କଥାବାର୍ତ୍ତା, ଫୋନ୍‌ର ଆଳାପ, ସବୁକୁ ଏକାଠି କରି ମିଷ୍ଟର ଆନ୍‌ସାରୀଙ୍କର ଛବିଟିଏ ଆଙ୍କିଦେଲେ ନିଶ୍ଚିତ ଏ ଚେହେରା ସହିତ ମିଶିଯିବ। ଜଣେ ଭାରତୀୟ ଅନ୍ୟ ଜଣେ ଭାରତୀୟଙ୍କୁ ଚିହ୍ନିବାରେ ଅସୁବିଧା ନ ଥିଲା।

ବାଉଁଶର ଛକ ଭଳି ରହିଥିବା ଭଙ୍ଗା କାଠ ଦୁଇଟି ସାବଧାନରେ ଆଡ଼େଇ ଦେଇ ସେ ସ୍ୱଚ୍ଛନ୍ଦରେ ଆଗେଇ ଯାଉଥିଲେ। ସୁପ୍ରିୟା ତାଙ୍କୁ ଅନୁସରଣ କରି କଷ୍ଟରେ ଆଗକୁ ଚାଲିବାରେ ଲାଗିଲା।

ଅସ୍ୱସ୍ତିକର ପରିସ୍ଥିତି, ଡ଼ାହାଣପଟେ ଉପରକୁ ଲମ୍ବିଯାଇଛି ପାହାଚ, ଅନ୍ଧାରୁଆ ସ୍ଥାନ। ପାହାଚ ସବୁ ଭଗ୍ନପ୍ରାୟ। ଟର୍ଚ୍ଚ ଦେଖାଇଲେ ମଧ୍ୟ ରାସ୍ତା ଦିଶୁ ନାହିଁ। ଦୃଷ୍ଟିରେ ପଡୁଛି କେତେକ ଅନାବନା ଗଛର ଗହଳି।

ସୁପ୍ରିୟା ନିଜର ଅସ୍ତିତ୍ୱ ଭୁଲି ସେଇଠି ସ୍ଥିର ରହି ଚତୁଃପାର୍ଶ୍ୱକୁ ଚାହିଁ ରହିଲା। ଆନ୍‌ସାରୀ ତା' ପାଦ ପାଖକୁ ଟର୍ଚ୍ଚ ପକାଇ କହିଲେ, ''ଧୀରେ ଆସନ୍ତୁ।''

ଏସବୁ ମଣିଷ ରହିବା ସ୍ଥାନ ତ ! ତେବେ କ'ଣ ଧଳା ପୋଷାକଆବୃତ୍ତ ବ୍ୟକ୍ତି ମିଷ୍ଟର ଆନ୍‌ସାରୀ ନୁହନ୍ତି !! ତାଙ୍କ ଚେହେରା ଏବେ ଅଦ୍ଭୁତ ମନେ ହେଉଥିଲା ସୁପ୍ରିୟାକୁ। ଭୟ, ଆଶଙ୍କାରେ ସେ ନିଜର ସ୍ଥିତି ହରାଉଥିଲା। ଏମିତି କେତେ ଗଳ୍ପ ସେ ଶୁଣିଥିବ। ସେ ତେବେ...

ଆଃ – ଝୁଣ୍ଟି ପଡୁଥିବାବେଳେ ନିଜକୁ ସଂଭାଳିନେଲା ସୁପ୍ରିୟା। ତଥାପି ଭୟ ବିଜଡ଼ିତ ସ୍ୱରରେ ପଚାରିଲା, "ଏସବୁ ଭାଙ୍ଗି ଯାଇଛି। ରିପେୟାର୍ ନ କଲେ ଆପଣଙ୍କୁ ଅସୁବିଧା ହେଉନାହିଁ।"

ବୃଦ୍ଧ ଆନ୍‌ସାରୀ ଉତ୍ତରଦେଲେ ନାହିଁ। ସାମାନ୍ୟ ହସି ଆଗେଇ ଯାଉଥିଲେ। ଏସବୁ ଅନୁଭବ କରୁଥିଲା ସୁପ୍ରିୟା। ଅଂଧାରରେ ସେଇ ଭଙ୍ଗା ପାହାଚରେ ଉପରକୁ ଉଠିବା ବ୍ୟତୀତ ତା'ର ଅନ୍ୟ ଉପାୟ ନ ଥିଲା। କୌଣସି କଥାର ଉତ୍ତର ନ ଦେଇ ଆନ୍‌ସାରୀ ଏଭଳି ହସୁଛନ୍ତି କାହିଁକି ? ସ୍ଥାନଟା ବେଶ୍ ଥରମା ହୋଇ ରହିଛି। ଉପରେ ଡ଼ାହାଣ ଆଡ଼କୁ ନିରନ୍ଧ୍ର ଅଂଧକାରରେ ତଥାପି ବାରି ହେଉଛି କେତେ ବଖରା ଭଗ୍ନପ୍ରାୟ କୋଠରୀ ?

ପାହାଚରେ ଉପରକୁ ବେଶ୍ ସହଜରେ ଉଠିଯାଉଛନ୍ତି ଧଳା ପୋଷାକ ପରିହିତ ମୂର୍ତ୍ତିଟି। ସେ ଯାଇ ପାରୁନାହିଁ। କାହିଁ କେତେ ଦୂର ଜେରୁଜେଲମ୍ ! ତା'ର ପୁରୁଣା ସହର ମଧ୍ୟରେ ଏମିତି ଜନମାନବ ଶୂନ୍ୟ ଏହି ଭଂଗାଘର ସବୁ ! କିଏ ତାକୁ ବାଟ କଢେଇ ନେଇଯାଉଛି। ଓଃ ସଂଧ୍ୟା ପରେ ଆସିବା ହୁଏତ ଠିକ୍ ହେଲା ନାହିଁ।

ମୂର୍ତ୍ତି ବିସ୍ମିତ ହେଉ ନାହିଁ। ଧୈର୍ଯ୍ୟର ସନ୍ଧ ଅପେକ୍ଷା କରିଛି ନୀରବରେ। ଅଦ୍ଭୁତ ପରିବେଶ !

କ୍ଷୀଣ ଆଲୋକ ରେଖାଟି ସୁପ୍ରିୟା ମନରେ ଆଶା ସଂଚାର କଲା। ଭାରତର ଜାତୀୟ ପତାକା ଏବଂ ବୃଦ୍ଧ ଆନ୍‌ସାରୀଙ୍କର ଦୁର୍ବଳ ମୁହଁଟି ଏବେ ସ୍ପଷ୍ଟ ଦେଖି ପାରିଲା ସୁପ୍ରିୟା। ଧୀରେ ସଂବିତ୍ ଫେରିପାଉଛି ସେ।

ଆନ୍‌ସାରୀ ମୁଣ୍ଡ ନୁଆଇଁ ଛୋଟ କୋଠରୀ ଭିତରେ ପ୍ରବେଶ କଲେ, ସୋଫାଟିରେ ତାକୁ ବସିବା ପାଇଁ ନିର୍ଦ୍ଦେଶ ଦେଲେ।

ସଯତ୍ନ କ୍ଷୁଦ୍ର କୋଠରୀଟିକୁ ନିଜ ଇଚ୍ଛା ମୁତାବକ ସଜାଇଥିଲେ ସେ।

ଭାରତର ସଂସ୍କୃତି, ଐତିହ୍ୟ, ଗାନ୍ଧୀ, ଜବାହାରଙ୍କଠାରୁ ଆରମ୍ଭ କରି ରାମକୃଷ୍ଣ, ବିବେକାନନ୍ଦ, ଜଗନ୍ନାଥ, ଶ୍ରୀକୃଷ୍ଣ, ବୁଦ୍ଧ, ଯୀଶୁଙ୍କର ଫଟୋ, କୋରାନ୍, ବାଇବେଲ୍, ଗୀତା ଅତି ସୁନ୍ଦର ଭାବରେ ରଖାଯାଇଛି। ସିଲ୍କକନାର ଛୋଟ ଜାତୀୟ ପତାକାଟିରେ

ସୁପ୍ରିୟାର ଆଖି ସ୍ଥିର ହୋଇଗଲା।

ବୃଦ୍ଧ ଆନ୍‌ସାରୀ ହସି ହସି କହିଲେ, "ମୋ ବେଗମ୍ ନିଜେ ସିଲେଇ କରିଛନ୍ତି।"

ପରଦା ଆଢ଼େଇ ଭିତରକୁ ପଶି ଆସିଲେ ବେଗମ୍ ଅମିନା। ଦେହରେ ଲୋଟା ହୋଇଯାଇଥିବା, ବହୁତ ଦିନରୁ ସାଇତା ହୋଇ ରଖା ଯାଇଥିବା ଖଣ୍ଡେ ନୀଳ, ନାଲି, ଶାଗୁଆ ରଂଗର ସିଲ୍‌କନାରେ ସିଲେଇ ହୋଇଥିବା ସାଲ୍‌ୱାର କୁର୍ତ୍ତା। କୁଞ୍ଚିତ ଚର୍ମ, ଦୁର୍ବଳ, ଶୁଷ୍କ ବିରସ ମୁଖମଣ୍ଡଳ। ବୃଦ୍ଧା ବେଗମ୍ ଭାରତୀୟ ଅତିଥିଙ୍କପାଇଁ ବେଶ୍ ଆଗ୍ରହରେ ଆଣିଥିଲେ ଗୋଟିଏ ଗ୍ଲାସ୍ ସରବତ୍, ପ୍ଲେଟ୍‌ରେ ମିଠା, କିଛି ଫଳ।

ତାଙ୍କର ଥରୁଥିବା ହାତରୁ ଟ୍ରେଟି ନେଇଆସି ପାଖ ଟେବୁଲରେ ରଖିଦେଇ ତାଙ୍କୁ ବସିବାପାଇଁ ଅନୁରୋଧ କଲା ସୁପ୍ରିୟା।

– ପିଲାମାନେ କେହି ପାଖରେ ନାହାଁନ୍ତି। ଆମେ ଦୁହେଁ ରହିଛୁ ଏମିତି।

– କିନ୍ତୁ ଆପଣ ଇଣ୍ଡିଆରେ ନ ରହି ଏଠି ଏ ବୟସରେ?

– ଇଣ୍ଡିଆର ଅଧିକାର ଟିକକ ଜରିବସିଚୁ, ମିସେସ୍ ଦାଶ୍।

ବେଗମ୍ ଅମୀନା ଅଧା ଅଧା ହିନ୍ଦୀରେ ଥରି ଥରି କହିଲେ।

– ବେଗମ୍ ଆରବର ଲୋକ। ଅଥଚ ମୋ ଅପେକ୍ଷା ଇଣ୍ଡିଆ ପ୍ରୀତି ତାଙ୍କର ଅଧିକ।

– କଭି ଭି ଜାନେକୋ ନେହିଁଦିଆ, ବହେନ୍। ଓହି ଭି ଠିକ୍ ହୈ, କ୍ୟା କରୁଁ। ପୁଛୋ ଆନ୍‌ସାରୀସେ। ବତାୟେଗା ସବ୍। କୁଛ ନେହିଁ କର୍‌ସକତେ ହମ୍? ଅଭି ଇଣ୍ଡିଆସେ କୋଇ ନେହିଁ ଆତା।

ବେଗମ୍‌ଙ୍କ କଣ୍ଠରେ କାରୁଣ୍ୟ।

– ଆୟେଙ୍ଗେ ଜରୁର, ବେଗମ୍। ଉନ୍‌ଲୋଗୋଁ କେ ଲିୟେ ଯୋ କୁଛ ହୈ ଇଧର, ହମ୍ କୈସେ ଛୋଡ଼କେ ଚଲେ ଜାୟେଙ୍ଗେ?

ଆନ୍‌ସାରୀ ତାଙ୍କୁ ବୁଝେଇଲେ।

"ଏସବୁ ଯାହା ଦେଖି ଆସିଲେ ମ୍ୟାଡ଼ମ୍, ମୋ ବାପାଙ୍କର କୀର୍ତ୍ତି। ମୁଁ ତ ପଚାଶ ବର୍ଷ ରହି ସାରିଲିଣି। ତା'ର ଦଶ, ପନ୍ଦର ବର୍ଷ ପୂର୍ବରୁ ବ୍ରିଟିଶ୍ ସାହେବମାନଙ୍କ ସହ ବୁଲାବୁଲି କରିବାକୁ ଆସି ସେ ଜେରୁଜେଲମ୍‌ରେ ରହିଗଲେ।

ସବୁ କଣ୍ଟ୍ରିର ହସ୍‌ପିସ୍ ରହିଥିଲା। ଅଥଚ ଇଣ୍ଡିଆର କିଛି ନ ଥିଲା ଏଠି।

ତା' ଚିନ୍ତା କଲେ ସେ। ସେତେବେଳେ ପାଲେଷ୍ଟାଇନ୍‌ରେ ଜାଗା ମିଳିଗଲା ଏ ହସ୍‌ପିସ୍ ପାଇଁ।

ଟ୍ରଷ୍ଟ୍ ହେଲା, ଆବାଜାନ୍ ଟ୍ରଷ୍ଟି ରହିଲେ। ସେତେବେଳେ ତ ହୋଟେଲ ବିଜିନେସ୍ ସେମିତି ନ ଥିଲା। ଇଣ୍ଡିଆରୁ ଏହି ପବିତ୍ର ମାଟିକୁ ଆସୁଥିବା ଲୋକେ ବେଶ୍ ହଇରାଣ ହେଉଥିଲେ ରହିବା ଖାଇବା ପାଇଁ। ସମସ୍ତଙ୍କ ସୁବିଧା ପାଇଁ ହସ୍‌ପିସ୍‌ର ବ୍ୟବସ୍ଥା। ଏବଂ ତତ୍ତ୍ୱାବଧାରକ ହୋଇ ମୋ ଫାଦର୍ ରହିଗଲେ ତାଙ୍କ ଶେଷ ଜୀବନ ଯାଏ।''

ଟିକିଏ ନୀରବ ରହି ସେ ପୁଣି ଆରମ୍ଭ କଲେ, ''ଦେଶ ଛାଡ଼ିବାକୁ କେବେ ବି ଚାହିଁ ନ ଥିଲି। ଆଲିଗଡ଼ରେ ଘର, ସଂପତ୍ତି, ବ୍ୟବସାୟ, ଆତ୍ମୀୟ ସ୍ୱଜନ, ବିଶେଷକରି ମୋର ଘନିଷ୍ଠ ବନ୍ଧୁମାନେ। ସେମାନଙ୍କ ସହ ଖେଳିଲି, ପଢ଼ିଲି। ସ୍କୁଲ୍, କଲେଜ, ଇଉନିଭରସିଟି ପାଠ ଶେଷ ହୋଇଆସୁଥାଏ। ଭବିଷ୍ୟତ ପାଇଁ ଅନେକ ଯୋଜନା। ଏକ୍ସପୋର୍ଟ ବ୍ୟବସାୟ କରିବି। ଜଣେ ପଇସାବାଲା ଲୋକ ହେବି। ଏମିତି କେତେ ବିଷୟ ମୋ ମନରେ...

ଖବର ପହଞ୍ଚିଲା ଇଣ୍ଡିଆରେ, ତୁରନ୍ତ ଆସି ପହଞ୍ଚି ଯାଅ। ଆବାଜାନ୍ ମୃତ୍ୟୁ ଶଯ୍ୟାରେ। ଆସିଲି, ଭାଇ ଭଉଣୀମାନେ ମଧ୍ୟ ଆସିଥିଲେ। ଆବାଜାନ୍ ଚାଲିଗଲେ ଚିରଦିନ ପାଇଁ। ଯିବା ପୂର୍ବରୁ ମୋତ ସମର୍ପିଦେଲେ ଏ ଦାୟିତ୍ୱ, 'ଦେଶ ପାଇଁ କିଏ କେତେ କାମ କରିଗଲେ। ଜୀବନ ବଳିଦେଲେ। ଏ ତ ସାମାନ୍ୟ କାର୍ଯ୍ୟଟାଏ। ମହତ୍ ଭାବରେ ବଂଚିବାକୁ ଶିଖ୍, ପୁଅ। ମୋର ଆଶୀର୍ବାଦ।'

ଭାଇ ଭଉଣୀ ଫେରିଗଲେ। ମୁଁ ମୋ ତାଜମହଲ ଭାଙ୍ଗି ଦେଇ ଏଠି ନୂଆକରି ଗଢ଼ିଲି। ବିବାହ କଲି। ଭାରତୀୟଙ୍କ ସୁଖ ପାଇଁ ହସ୍‌ପିସ୍‌କୁ ଭଲଭାବେ ଚଳାଇବାରେ ଲାଗିଲି।

କେତେଦିନ? କିଏ ଚିନ୍ତା କରୁଛି? ଭାରତ ସରକାରଙ୍କ କର୍ମକର୍ତ୍ତାମାନେ ଏ ସଂପର୍କରେ ସଂପୂର୍ଣ୍ଣ ଉଦାସୀନ। ଦେଖିଲେ ତ ଘର ଭାଙ୍ଗିଗଲାଣି, ଏତେ ଉଚ୍ଚକୁ ପାହାଚର ଯେଉଁ ଅବସ୍ଥା! କେବେ କିଛି ହେଇପାରେ। ଏଠି ଦେଶର ନାଁ ଅଛି ତ। ଟ୍ରଷ୍ଟ୍ ଭାଙ୍ଗି ଏଠୁ ଚାଲିଗଲେ ମୋ ଦେହ ପାଇଁ ଆରାମ ପାଇବି। ମାତ୍ର ମୋର ମନ, ମୋର ଆତ୍ମା ମୋତେ ମାଫ୍ କରିବ ତ?

ହୁଏତ ଦିନେ ନୂଆ ଭାବରେ, ନୂଆ ଢ଼ଙ୍ଗରେ ଗଢ଼ାହେବ ଇଣ୍ଡିଆନ୍ ହସ୍‌ପିସ୍। ସେଇ ଆଶା, ବିଶ୍ୱାସ ନେଇ କର୍ମକରିଯାଉଛି।''

ତାଙ୍କ ବ୍ୟତୀତ କିଏ ବା କାହିଁକି ଚିନ୍ତା କରିବ ଏଥିପାଇଁ? ଭାରତରୁ

କିଏ କେବେ କେବେ ଆସୁଛନ୍ତି। ହସ୍‌ପିସ୍‌ରେ ସେମାନଙ୍କ ରହିବାର ସୁବିଧା ନ କରିପାରିଲେ ମଧ୍ୟ ସେମାନଙ୍କ ଆର୍ଥିକ ଅବସ୍ଥା ବୁଝାବୁଝି କରି ସେହି ଅନୁସାରେ ହୋଟେଲ୍‌ମାନଙ୍କରେ ସୁବନ୍ଦୋବସ୍ତ କରିଦିଅନ୍ତି ମିଷ୍ଟର ଆନ୍‌ସାରୀ। ଜୀବନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ କର୍ତ୍ତବ୍ୟ ଭାବି ଏଭଳି କର୍ମ କରିଚାଲିଥିବେ ସେ।

ସୁପ୍ରିୟା ସୁଲେମାନ୍ ରୋଡ୍‌ରେ ପହଞ୍ଚିଯାଇଥିଲା। ସେଇଠାରୁ ଫେରିଯିବା ପାଇଁ ବୃଦ୍ଧ ଆନ୍‌ସାରୀଙ୍କୁ ସେ ଅନୁରୋଧ କଲା।

ପରବର୍ତ୍ତୀ ଦୁଇଦିନ 'ଏଗଡ୍ ଟୁରସ୍' ନେଇ ସୁପ୍ରିୟା କିପରି ଜେରୁଜେଲମ୍‌ର ନିଉ ସିଟିର ମ୍ୟୁଜିୟମ୍, ଚର୍ଚ୍ଚ ଅଫ୍ ନେସନ୍‌ସ ଏବଂ ଓଲଡ୍ ସିଟିର ଦର୍ଶନୀୟ ସ୍ଥାନମାନଙ୍କ ସହ ୟାଦ୍ ଭାସ୍‌ମେ, ପ୍ରଭୁ ଯିଶୁଙ୍କ ଜନ୍ମସ୍ଥାନ ବେଥଲ୍‌ହାମ୍ ଇତ୍ୟାଦି ସୁବିଧାରେ ବୁଲିପାରିବ– ଆନ୍‌ସାରୀ ବୁଝାଇ କହୁଥିଲେ।

ଭଦ୍ରାମୀ ଦୃଷ୍ଟିରୁ ତାଙ୍କୁ ଚାହିଁ ରହିବା ବ୍ୟତୀତ ଏସବୁ କଥା ଆଦୌ ଶୁଣିପାରୁ ନଥିଲା ସୁପ୍ରିୟା। ଆନ୍‌ସାରୀଙ୍କ ଜୀବନର ସେଇ ଆରବ କାହାଣୀ ତଥାପି ଆଚ୍ଛନ୍ନ କରି ରଖିଥିଲା ତାକୁ।

ଏକାକୀ ହୋଟେଲ୍‌କୁ ଫେରିବା ସମୟରେ ଦଳେ ଯୁବକ ରାସ୍ତା ମଝିକୁ ଥଣ୍ଡାପାନୀୟର ବୋତଲ ଇତ୍ୟାଦି ଫୋପାଡ଼ି ଚାଲିଥିଲେ। ରାସ୍ତା ସାରା ଭଙ୍ଗା କାଚ। ପାଖ ଦୋକାନମାନଙ୍କରେ ଟେଲିଭିଜନ୍‌ରେ ସ୍ଥାନୀୟ ସଂବାଦ ପଢୁଥିବା ତରୁଣୀଟି ବେଶ୍ ଗାମ୍ଭୀର୍ଯ୍ୟର ସହ ଘୋଷଣା କରୁଥିଲେ– ଆଜି ଇସ୍‌ରାଇଲ୍ ପୋଲିସ୍‌ଙ୍କ ଗୁଳିମାଡ଼ରେ ଦୁଇଜଣ ଆରବ ଯୁବକ ନିହତ ହୋଇଥିବା ଘଟଣାକୁ ନେଇ ସାରା ସହରରେ ଉତ୍ତେଜନା...

ଧୀରେ ଧୀରେ ହୋଟେଲ, ଦୋକାନମାନ ବନ୍ଦ ହୋଇଯିବାର ଶବ୍ଦ ଶୁଣିପାରୁଥିଲା ସୁପ୍ରିୟା। ଗୋଲେଡ଼େନ୍ ଭ୍ୟାଲିର ପାହାଚରେ ଉଠି କାଚ କବାଟ ଠେଲି ଭିତରେ ପଶିବା ମାତ୍ରକେ ସମ୍ଭବତଃ ସୁପ୍ରିୟାକୁ ଅପେକ୍ଷା କରିଥିବା ସେଇ ବୃଦ୍ଧ ବ୍ୟକ୍ତି ଦ୍ୱୟ ଯଥାଶୀଘ୍ର ଧାଇଁ ଆସି ବାହାରର କବାଟ ବନ୍ଦକରି ଉଜ୍ଜଳ ବିଜୁଳିବତୀସବୁ ଲିଭାଇ ଦେଇଥିଲେ।

□ □

# ମୋହ

ଅନେକଥର ସୁପ୍ରୀତ୍‌ର ଯୁକ୍ତି ହୁଏ ସୁନୀତା ସହ। ସୁପ୍ରୀତ୍‌ର କିଛି କଥା ସେ ଗ୍ରହଣ କରିପାରେ ନାହିଁ। ନିଜ ଚିନ୍ତା, ବିଚାରରେ ସୁନୀତା ସ୍ୱଚ୍ଛ।

—ଭବିଷ୍ୟତ? ଭବିଷ୍ୟତର ଚିନ୍ତା ସବୁବେଳେ କରିବ ତ ବର୍ତ୍ତମାନ ହାତରୁ ଖସିଯିବ। ମୋ ମତରେ ବର୍ତ୍ତମାନର ସମୟକୁ ଅଧିକ ଗୁରୁତ୍ୱ ଦେବା ଆବଶ୍ୟକ। ଆଜିର ସୁନ୍ଦର ଦିନଟି କାଲିକି ନ ଥିବ ଏବଂ କାଲିକୁ ଆମ ଆୟୁଷର ଦିନଟିଏ କମିଯାଇଥିବ।

ହୋ ହୋ ହସରେ ସୁନୀତାର ଏଭଳି କଥା ସବୁ ଉଡ଼େଇଦିଏ ସୁପ୍ରୀତ୍।

—ଏସବୁ ତୁମ କବିତା, ଗଳ୍ପର ଭାଷା। ତେବେ କ'ଣ କହୁଚ? ଆମର ଭବିଷ୍ୟତ, ପୁଅ, ଝିଅଙ୍କ ପାଇଁ କିଛି ସଂଚିବା ନାହିଁ? ସବୁ ଅର୍ଥ ନେଇ ବର୍ତ୍ତମାନକୁ ଉପଭୋଗ କରିଯିବା? ଏଇତ ତୁମର ବିଚାର!

—ଆଦୌ ନୁହେଁ। ମୁଁ ସେମିତି ଭାବ ନେଇ କଥାଟା କହିନାହିଁ।

ସଂପୂର୍ଣ୍ଣ ସକାଳ ହୋଇନାହିଁ। କୁହୁଡ଼ିଆ ପାଗ। ସକାଳବୁଲା ଶେଷ କରି ପାର୍କର ଏକାନ୍ତ ସ୍ଥାନଟିରେ ବିଶ୍ରାମ ନେଇଥିଲେ ସେ ଦୁହେଁ। ଅକସ୍ମାତ୍ କଥାର ସ୍ରୋତ ବନ୍ଦ ହୋଇ ଆସିଲା। କିଏ ଜଣେ ସେମାନଙ୍କ ପାଖକୁ ଆଗେଇ ଆସୁଥିଲେ। ଅଯତ୍ନ ବେଶବାସ, ଶୁଷ୍କ ବିରସ ମୁଖ।

ଅନିରୁଦ୍ଧ ଶ୍ରୀଚନ୍ଦନ! ପାର୍କର ଚତୁଃପାର୍ଶ୍ୱରେ ରାସ୍ତାକୁ ଲାଗି ଯେଉଁ କେତୋଟି ସୁଦୃଶ୍ୟ ପ୍ରାସାଦୋପମ ବାସଗୃହ ଦୃଷ୍ଟି ଅବରୋଧ କରେ, ତନ୍ମଧ୍ୟରୁ ଗୋଟିଏ ଅନିରୁଦ୍ଧର।

ରାଜପ୍ରାସାଦ ଭଳି ଆଧୁନିକ ଆର୍‌କିଟେକ୍ଟଙ୍କ ପ୍ଲାନ୍‌ରେ ବାସ୍ତବିକ ଚାହିଁ ଦେଖିବା ଭଳି ଘରଟାଏ।

ସାମନାରେ ସୁନ୍ଦର ଫୁଲ ବଗିଚା। ପ୍ରତି ଋତୁରେ ଫୁଲମାନେ ହସୁଥାଆନ୍ତି। ଏବେ କିନ୍ତୁ ଘରଟି ଶ୍ରୀହୀନ ମନେ ହେଉଛି। କେତେଦିନ ହେବ କେହି ଯେପରି ବଗିଚାର ଯତ୍ନ ନେଇ ନାହିଁ।

ସୁପ୍ରୀତ୍, ସୁନୀତାଙ୍କର ପାଖ ପଡ଼ୋଶୀ ସେ।

— ଦେଖମ, ଭଦ୍ରଲୋକ ଏମିତି କ'ଣ ଚାହିଁ ଚାହିଁ ଏଇ ଆଡ଼େ ଆସୁଛନ୍ତି ?

ସୁପ୍ରୀତ୍ ଉଠି ଗଲା କାଠ ବେଞ୍ଚରୁ। ସୁନୀତା ମଧ୍ୟ ଯିବା ପାଇଁ ବାହାରିଲା।

— ଭାଇ, ମୋ ଖବର କିଛି ଶୁଣିନ ?

ଅନ୍ତରର ସମସ୍ତ ଉଚ୍ଛ୍ୱାସ ଏକତ୍ର କରି ଅନିରୁଦ୍ଧ ମୁଠେଇ ଧରିଛି ସୁପ୍ରୀତ୍‌ର ହାତ ପାପୁଲି !

— ଭୁଲିଗଲ ସୁପ୍ରୀତ୍ ? ଥରଟିଏ ପଚାରିଲ ନାହିଁ ? ଆସିଲ ନାହିଁ ମୋତେ ଦେଖିବାକୁ ? ଅଭାଗାଟାଏ, କେତେ ଦୁଃଖି ମୁଁ ! ଅଂଜୁ ମୋତେ ଏକା କରି ଛାଡ଼ି ଚାଲିଗଲା !

ଆଖିରୁ ଝରି ଯାଉଚି ଅସରା ଅସରା ଲୁହ। ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦୁଥିଲା ଅନିରୁଦ୍ଧ।

ସୁପ୍ରୀତ୍, ସୁନୀତା ନୀରବରେ ଠିଆ ହୋଇ ଏ ଦୃଶ୍ୟ ଦେଖିଲେ। କ୍ରନ୍ଦନର ଉଚ୍ଛ୍ୱାସ କମି ଆସିଲା। ଅନିରୁଦ୍ଧର କାଂଧରେ ଧୀରେ ହାତ ରଖିଲା ସୁପ୍ରୀତ୍। ଆସ୍ତେ କହିଲା, "ମନ ସ୍ଥିର ରଖ, ଅନିରୁଦ୍ଧ। ତୁମକୁ ବୁଝେଇବାକୁ ଭାଷା ନାହିଁ। ମୁଁ ଆସିଥିଲି। ଥରେ ନୁହଁ, କେତେଥର। ଡ଼ାକ୍ତରଙ୍କୁ ଆଣିବାଠାରୁ ଶ୍ମଶାନକୁ ଯିବା ପର୍ଯ୍ୟନ୍ତ ତୁମ ପାଖେ ପାଖେ ଥିଲି। ସବୁ ଭୁଲି ଯାଉଛ ? ତୁମେ ଅବସ୍ଥାରେ ନାହଁ। ଦୟାକରି ନିଜକୁ ସଂଭାଳ।"

"ପାରୁନାହିଁ, ମୁଁ ପାରୁନାହିଁ।" ପାଗଳଙ୍କ ଭଳି ଏତିକି କହି କହି ଘରକୁ ଫେରିଗଲା ଅନିରୁଦ୍ଧ।

ଏବେ ବଗିଚାରେ ମନମାରି ବସୁଚି ଅନିରୁଦ୍ଧ। ଘର ଭିତରେ ରହିପାରୁ ନାହିଁ। ଅଂଜଳି ନଥିବା ଘରଟା ତାକୁ ଠେଲି ବାହାରକୁ ପଠେଇ ଦେଉଛି।

ପତ୍ନୀକୁ ପ୍ରେମ କରିବା ଲୋକ କ୍ୱଚିତ୍ ଥିବେ। ଅଂଜଳିର ସୌନ୍ଦର୍ଯ୍ୟ,

ସାଇ ପଡ଼ିଶାର ବୁଢ଼ାବୁଢ଼ୀମାନେ କହନ୍ତି, ''ଶାଢ଼ି, ଗହଣା ମଣ୍ଡି ହେଲେ ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀ।'' ଅଂଜଳି ବେଶ୍ ଚୁପ୍‌ଚାପ୍ ସ୍ୱଭାବର। ପାଖ ପଡ଼ୋଶୀଙ୍କ ଘରକୁ ଯିବା ଆସିବା ନ କରୁ ପଛକେ, ଟିକିଏ ହସ, ପଦେ ସ୍ନେହପୂର୍ଣ୍ଣ କଥାରେ ସେ ପରକୁ ଆପଣାର କରେ।

—ପଚାଶ, ଏକାବନ ଏମିତି କି ବୟସ ଯିବା ପାଇଁ? ସତରେ ଭାଗ୍ୟହୀନ ଲୋକଟାଏ ଅନିରୁଦ୍ଧ!

ସଭିଙ୍କର ଏଇ ମତ।

ଆଗରୁ ଏମିତି ବଡ଼ ଘରଟାଏ ନ ଥିଲା, ପ୍ରଶସ୍ତ ବଗିଚା ମଝିରେ କଣିକିଆ ହୋଇ ଆଧୁନିକ ଟାଇଲ୍ ଖଂଜା ତିନିଚାରି ବଖରାର ଘରଟିଏ। ଫୁଲ ବଗିଚା ହସୁଥାଏ ସବୁଦିନେ, ସବୁ ଋତୁରେ। ଘର କାମ ସାରି ସେଇଠି ବୁଲାବୁଲି କରେ ଅଂଜଳି।

ବଡ଼ପୁଅ ପାଠ ଶେଷ କରି ଚାକିରି ଚେଷ୍ଟାରେ ଥାଏ। ସାନର ବ୍ୟବସାୟ। ଝିଅଟି ଏମ୍.ଏ ଶେଷ ବର୍ଷର ଛାତ୍ରୀ। ତଥାପି ଅଂଜଳିକୁ ଯିଏ ଦେଖିବ, ହେଇ ଏବେ ନୂଆ ବାହାହେଇ ଆସିଛି କି!

ଅନିରୁଦ୍ଧଙ୍କୁ ସମୟ କାହିଁ ଘରକୁ ଆସିବାକୁ? ଚାକିରି, ପ୍ରମୋଶନ୍‌ର ନିଶାରେ ସାରା ଓଡ଼ିଶା ବୁଲି, ଭାରତ ପ୍ରଦକ୍ଷିଣ କରି ଆସିଲା ସେ। ଅଂଜଳି କୁଆଡ଼େ ଯାଇ ନାହିଁ।

''ଘର ଛାଡ଼ି, ପିଲାଙ୍କ ପାଠ ନଷ୍ଟ କରି ସେମାନଙ୍କୁ ଧରି ବାର ଆଡ଼େ ବୁଲିବା ଠିକ୍ ନୁହେଁ। ଆମ ସୁଖ କିଏ ନେଇ ଯିବ? ଅପେକ୍ଷା କର। କେତେଟା ଦିନ ଆଉ? ଝିଅକୁ ବାହାକରିଦେବା। ପୁଅ ଦିହେଁ ଚାକିରି କଲେ ତାଙ୍କ କାମ ସରିଲା। ତେଣିକି ତୁମେ ଆଉ ମୁଁ।''

ସେଇ ଆଶା ନେଇ ଅଂଜଳି ଚାହିଁ ରହିଲା ଭବିଷ୍ୟତକୁ।

କିଏ କହେ, ଅନିରୁଦ୍ଧ କଥାରେ କଥାରେ ମନ ମୋହି ନିଏ ଅଂଜଳିର। କାହାସହ ମିଶିବାକୁ ଛାଡ଼େ ନାହିଁ। ଅଂଜଳି ପାଇଁ କେତେ କାମର ଜଂଜାଳ ଖଂଜିଦିଏ। ସେ ସବୁ ବ୍ୟବସାୟର କଥା। ଘରେ ବସି ମୁଣ୍ଡ ଖେଳେଇଲେ ଅର୍ଥ ଆସିବ। ସେୟାର ବିଜିନେସ୍। ପଇସାଟି ବେଶ୍ ବୁଝୁଥିଲା ଅନିରୁଦ୍ଧ।

—ଅର୍ଥ ହିଁ ସୁଖ ଆଣିଦେବ ବାକି ଜୀବନରେ। ପଞ୍ଚାବନ ବର୍ଷରେ ମୁଁ

ଚାଲି ଆସିବି ତୁମ ପାଖକୁ। ଅଠାବନ ଯାଏ କାମ କରିବାର ଆବଶ୍ୟକତା ନାହିଁ। ଢ଼େର ଖଟିଲି ଜୀବନସାରା। ଏବେ ଆଉ କିଛି ଚିନ୍ତା ନ ଥିବ। ଦକ୍ଷିଣ ପାଖ ବାଲକନିରେ ସକାଳ, ସଂଧ୍ୟା ଚା'ଖିଆ, ଆଳାପ...

ତୁମର ଘରେ କି କାମକି? ବୋହୂ ଦୁହେଁ ସବୁ ବୁଝିବେ, ସବୁ କରିବେ। ଘର ସଂଭାଳିବେ।

ଅଂଜଳି ବୁଝିଯାଏ। ଶୁଆ ଭଳି ମନେ ମନେ ହୁଏ ତ ଘୋଷିହୁଏ ସବୁକଥା। ଚିନ୍ତାକରେ, ଆହାଃ କେତେ ଖଟୁଛନ୍ତି ଆମ ପାଇଁ! ତାଙ୍କ ଭଳି ଆଉ କେହି ନାହିଁ। ଘର ସଂସାର, ସ୍ତ୍ରୀ, ପୁଅ ଝିଅଙ୍କ ପାଇଁ କାମ କରିବାରେ ତାଙ୍କର ସୁଖ।

ଘରେ ଅନେକ ଝଂଜାଳ ବଢ଼ିଲା। ନିଜ ଘରର ଆରାମ୍ ଛାଡ଼ି କେତେଟା ଟଂକାରେ ଚାକିରି କରିବାକୁ ଚାହିଁଲାନାହିଁ ବଡ଼ ପୁଅ।

—ତେବେ ଗାଁକୁ ଯାଇ ଜମିବାଡ଼ି ବୁଝ। ଏତେ ସଂପତ୍ତି, ଚେନାଏ ଅଧେ ଫସଲ ଆସୁଚି। ଧାନ, ନଡ଼ିଆ ବିକ୍ରି ହୋଇ କେତେଟା ବା ଟଂକା ଦଉଛନ୍ତି ସେମାନେ! ଅମଳବେଳେ ରହିଲେ ଅଧିକ ଆସିବ।

—ଧେତ୍, ପାଣି କାଦୁଅ ପଚ୍‌ପଚ୍ ଗାଁରେ କିଏ ରହିବ?

ବଡ଼, ସାନ ପୁଅ ଦିହେଁ ସହରର ଆରାମ ଛାଡ଼ି କେହି ଗଲେ ନାହିଁ।

ଗାଈ, ବାଛୁରୀ, ଚାକର, ପୂଝାରୀ, ଚାକରାଣୀ, ମାଳି, ଡ୍ରାଇଭର୍, ଗଲା ଅଇଲା, ବନ୍ଧୁବାନ୍ଧବ ଘରେ ଖାଇବାକୁ ପଂଝାଏ ଲୋକ। ବୁଝାବୁଝି କରିବାକୁ ଜଣେ, ସେ ଅଂଜଳି।

ଘର ହେଲା। ଅନିରୁଦ୍ଧ ଏ ସହରକୁ ବଦଳି ହେଇ ଆସି କେତେ ବର୍ଷ ଅଣନିଶ୍ୱାସୀ ହୋଇ ଖଟିଲା। ପାଖରେ ଥାଇ ବି ସ୍ତ୍ରୀର ଭଲମନ୍ଦ ବୁଝିବାକୁ ଗୋଟାଏ ମିନିଟ୍ ସମୟ ପାଇଲା ନାହିଁ। ଝିଅ ବାହାଘର, ପୁଅ ବାହାଘର। ବୋହୂ ଦୁହେଁ ଘରର ଶ୍ରୀମଣ୍ଡନ କଲେ।

ଅନିରୁଦ୍ଧ ରାସ୍ତା ପାଏନାହିଁ। କେତେ କୁଆଡ଼େ ସଂଭାଳିବ? ପୁଅ ଦିହେଁ ଘରକୁ ଗୋଟିଏ ଟଂକା ଦିଅନ୍ତି ନାହିଁ। 'ଧାର ଦେ' କହି ବୋଉଠୁଁ ଟଂକା ମାଗି ଫେରାନ୍ତି ନାହିଁ। ସାନ ପୁଅ ପାଇଁ ମନ୍ତ୍ରୀଙ୍କୁ କହିବାକୁ ହୁଏ। ଆବଶ୍ୟକୀୟ ବ୍ୟବସ୍ଥା ମଧ। ବଡ଼ପୁଅ ପାଇଁ କୋଉ ଅଫିସର୍ ବଂଧୁଙ୍କ ପାଖକୁ ଧାଇଁବାକୁ

ହୁଏ। ସେମାନେ କ'ଣ କଲେ? ଆହୁରି ଟଂକା, ଅନେକ ବେଶୀ ଲୋନ୍ ନେବାକୁ ହବ। ଗାଁ ଜମିବାଡ଼ି ବନ୍ଧା ପକାଇବା, ଏ ବଡ଼ ଘରଟା ବି–ସାନପୁଅ ଜିଦ୍ କରେ, ଏଡ଼େ ବଡ଼ ଘର କ'ଣ ହବ? ମୋ ଇନ୍‌ଷ୍ଟିଚ୍ୟୁଟ୍ ଏଇଠି ଚାଲିବ।

–ନା, ଯାହା କରୁଚ କର। ଏସବୁ ହେଇ ପାରିବନି!

ଅନିରୁଦ୍ଧ ସ୍ପଷ୍ଟ ଭାବରେ ମନା କରେ। ଅଶାନ୍ତି କୁହୁଳେ ଘର ଭିତରେ। ଅନିରୁଦ୍ଧ ବିଭିନ୍ନ କାମରେ ବାହାରକୁ ବାହାରି ଯାଏ। ଅଂଜଳି ଘର ଭିତରେ ରୁଂଧି ହୁଏ ଚପା ଗୁଂଜରଣ ଶୁଣି, ସେମାନଙ୍କର ଅସନ୍ତୋଷ ଅନୁଭବ କରି। ଦେହ ଭଲ ରହୁନାହିଁ, ରାତିଦିନ ମୁଣ୍ଡବିନ୍ଧା, ବାନ୍ତି ବାନ୍ତି ଭାବ। ଅଯଥାରେ କେତେ ଔଷଧ ଗିଳିପକେଇ କାମରେ ଲାଗେ ଅଂଜଳି। ଶୋଇବାକୁ, ବିଶ୍ରାମ ଟିକେ ନେବାକୁ ବେଳ କାହିଁ?

ଅନିରୁଦ୍ଧ ଦେଖାଇଥିବା ସ୍ୱପ୍ନ ବହୁକାଳରୁ ସେ ଭୁଲି ସାରିଥିଲା। ଲୋକଟିର ଶାନ୍ତିରେ ବସି କେବେଦିନେ ଖାଇବା ହେଇ ପାରିଲା ନାହିଁ। ତାକୁ ନିଜ ଦୁଃଖ କ'ଣ କହିବ ଅଂଜଳି? ବୋଝ ଉପରେ ବୋଝ ଲଦିଦେବ? କିଛି କୁଆଡ଼େ କୂଳ କିନାରା ନାହିଁ!

ପାଖ ଠାକୁର ମନ୍ଦିରକୁ ଆସେ ଅଂଜଳି ସୋମବାର, ଗୁରୁବାର, ସଂକ୍ରାନ୍ତି, ପୂର୍ଣ୍ଣିମା– ଏମିତି କେତେ ପୂଜା ପାର୍ବଣ ଦିନରେ। କେହି କେହି ଅନ୍ତରଂଗ ପଡ଼ୋଶିନୀ ପଚାରନ୍ତି, "ଦେହ ଭଲ ନାହିଁକି, ଅଂଜଳି? ଏମିତି ଶୁଖିଲା କାହିଁକି ଦିଶୁଚ?"

ଘରକଥା କାହାକୁ କହିବ? ସେମିତି ହସ ହସ ମୁହଁ, ପଦେ ଦୁଇପଦ କଥାରେ କିଛି କିଛି ଆବଦ୍ଧ ଦୁଃଖ ମୁକୁଳି ଆସେ।

ରାତିରେ ଶୋଇବା ବେଳେ ଅଂଜଳିର ଭଲ ମନ୍ଦ ପଚାରିବ କ'ଣ ନିଜ ମନର ବୋଝ ହାଲ୍‌କା କରିବାକୁ ଦୁଇଚାରି ପଦ ଏମିତି କିଛି କହି କ୍ଲାନ୍ତ ଅନିରୁଦ୍ଧ ଶୋଇଯାଏ। କେବେ କେବେ ବିଷ ଉଦ୍‌ଗାରଣ କରେ ପୁଅ ଦୁହିଁଙ୍କ କାର୍ଯ୍ୟ କଳାପ ମନେ ପକେଇ–

"କୁଳାଙ୍ଗାର! ରିଟାୟାର୍ଡ଼ ବାପର ପଇସାକୁ ଆଖେଇଛନ୍ତି! ଏ କୁଷ୍ମାଣ୍ଡଙ୍କ ପରିବାର ପୋଷିବି ମୁଁ! ତୁମେ ଚାକରାଣୀ ଭଳି ଖଟୁଥିବ ଦିନରାତି!"

"ତୁନି ହୁଅ, ଆମ ପିଲାଙ୍କର ଅମଙ୍ଗଳ ହବ। ବଳେ ବୁଝିବେ ନାହିଁ। ଯାହା କହିବା କଥା କହି ତ ଦେଇଛ।"

ଅନିରୁଦ୍ଧ ଉତ୍ତର ଦିଏନାହିଁ। ମୁହଁ ବୁଲେଇ, ଅନ୍ୟ ପାଖକୁ କଡ଼େଇ ହୋଇ ଶୋଇଯାଏ।

କ'ଣ ଚାଲିଚି ଏ ଘରେ? ଜନ୍ମକଲା ପିଲାଙ୍କ ପାଇଁ ଏଭଳି କଥାବାର୍ତ୍ତା, ବାପା ମା'ଙ୍କ ତୁଣ୍ଡରେ! ଅଂଜଳିର ଆଖି ଓଦା ହେଇଆସେ। ସାରାରାତି ଛାତିରେ ଯନ୍ତ୍ରଣା। ନିଦ ନହେଲେ, ଅମ୍ଳ ହବ କି ଖାଇବା ଗଣ୍ଡାକ ହଜମ ହେବ ନାହିଁ। ଡ଼ାକ୍ତରଙ୍କ ଔଷଧ କ'ଣ କାମ ଦେବ? ଅଯଥାରେ ସମସ୍ତେ ହାଉ ହାଉ ହେବେ। ସେଦିନ ବଡ଼ପୁଅ ବୋହୁକୁ କହୁଥିଲା, "ବୁଢ଼ା ବୁଢ଼ୀଙ୍କ ପ୍ରେମ ଦେଖ! ବୋଉର ମୁଣ୍ଡ ଟିକେ ବିନ୍ଧିଲା ତ ଅମୃତାଞ୍ଜନ ଶିଶି ମୋଠୁଁ ମାଗିନେଇ ସକାଳୁ ସକାଳୁ ବାପା ମୁଣ୍ଡ ଚିପି ଦେଉଛନ୍ତି।"

ବୋହୁ ହସିଲା, "କିଛି ହେଇନିମ, ବିଛଣାରୁ ଉଠି ସମସ୍ତଙ୍କ ପାଇଁ ସେ ଚା' କରି ରଖି, ବାପାଙ୍କ ଚା' ନିଜେ ନେଇ ଶୋଇବା ଘରକୁ ଗଲେ। ମତେ ଡ଼ାକିଦେଲେ, 'ଚା' ହେଲାଣି।' ଶିଖୁଥାଅ, ବୁଝିଲ ତ।"

ସେ ଦୁହେଁ ହସୁଛନ୍ତି। ଏକଥା ଅନିରୁଦ୍ଧଙ୍କୁ କହିବା କଥା ନୁହେଁ। କାହାକୁ କହିବ ଅଂଜଳି? ନିଜ ଭିତରେ ଭିତରେ କେତେଆଡୁ କେତେ କଥା ଘାରୁଛି ତାକୁ।

ସେଦିନ ଠାକୁର ଘରୁ ରୋଷେଇ ଘରକୁ ଆସୁଥିଲା ଅଂଜଳି। ଭଲ ମଣିଷଟା। ରାତିରେ ଦେହ ବେଶୀ ଖରାପ ଲାଗିଲା। କାହାକୁ କହି ନ ଥିଲା। ପୁଅ ଦିହେଁ ତାଙ୍କ ଶୋଇବା କୋଠରୀରେ ଟି.ଭି. ଦେଖୁଛନ୍ତି। କେବେ ତ କଥା ଶୁଣନ୍ତି ନାହିଁ। 'ଡ଼ାକ୍ତରକୁ ଫୋନ୍ କର୍, ସାଙ୍ଗରେ ଧରିଆ ତ।'

ମା', ବାପା ଯିଏ କହୁ, ଟାଳିଦେବେ, 'ସକାଳେ ଗଲେ ହବ ନାଇଁ? କ'ଣ ଔଷଧ ଘରେ ଅଛି ଖାଇଦେ ବୋଉ। ମତେ ଟାୟାର୍ଡ଼ ଲାଗୁଛି।' ବୁଢ଼ାଟିମାନ ହେଲଣି। ପିଲାକିଆମି ଯାଉନାହିଁ। ହଉ, ପିଲାଛୁଆର ବାପ ହେଲେ ସବୁ ବୁଝିବେ।

ଅଂଜଳିର ଦେହ ଅଭୁତ ଲାଗିଲା। "ଶୁଣୁଛ?" ଧୀରେ ଉଠାଇଲା ଅନିରୁଦ୍ଧଙ୍କୁ।

"କ'ଣ ହେଲା?" ଅନିରୁଦ୍ଧ ବିଛଣାରେ ଉଠି ବସିଛି। ତଥାପି ହସୁଛି ଅଂଜଳି, "ବ୍ୟସ୍ତ ହୁଅନାହିଁ, ମୋତେ ଟିକେ ହସ୍‌ପିଟାଲ୍ ନେଇଯାଅ। ଏ ପ୍ରାଇଭେଟ୍

କ୍ଲିନିକ୍‌ରେ କିଛି ସୁବିଧା ନାହିଁ।''

''କ'ଣ ଲାଗୁଛି ?''

''ବାଥ୍‌ରୁମ୍ ଯାଇଥିଲି। ମୁଣ୍ଡ ଘୂରେଇଦେଲା, ସାରାଦିନ ମୁଣ୍ଡ ଯନ୍ତ୍ରଣା। ଛାତିରେ କଷ୍ଟ। ଇଏ ଅମ୍ଳ ନୁହଁ, କାଲିତ କିଛି ସେମିତି ଖାଇନି। ନିଃଶ୍ୱାସ ନେବା କଷ୍ଟ ହଉଚି !''

''ଶୋଇ ରହ। ବିଛଣାରୁ ଉଠନା, କଥା କହ ନାହିଁ। ଆରେ ବାପି, ବୁଲୁ, ଗାଡ଼ି କାଢ଼।

ସୁପ୍ରୀତ୍ ମଉସାଙ୍କୁ ଟିକେ ଫୋନ୍ କଲୁ ମା'।''

ଅନିରୁଦ୍ଧ ସାର୍ଟ ଖଣ୍ଡକ ଗଳେଇ ପକେଇ ବାହାରିଲେ ଯିବାକୁ। କାହାକୁ ଅପେକ୍ଷା ନ କରି ନିଜେ ବୁଦ୍ଧି ବାଟ ନପାଇ ସୁପ୍ରୀତ୍‌କୁ ଫୋନ୍ କରି ଅଂଜଳି ଦେହ କଥା କହିଲେ।

ସୁପ୍ରୀତ୍, ସୁନୀତା ଗାଡ଼ିନେଇ ପାଞ୍ଚ ମିନିଟ୍‌ରେ ପହଞ୍ଚିଲେ।

ବଡ଼ପୁଅ, ଅନିରୁଦ୍ଧ, ସୁପ୍ରୀଦ୍, ସୁନୀତା ଶୂନ୍ୟେ ଶୂନ୍ୟେ ଅଂଜଳିକୁ କାର୍ ପଛ ସିଟ୍‌କୁ ନେଇ ଆସିଲେ।

''ପିଲାଏ, ପଛରେ ଆସ। ଡ଼ାକ୍ତରଙ୍କୁ ମୁଁ କଥା କହିଛି।'' ସୁପ୍ରୀତ୍ କାର୍ ଷ୍ଟାର୍ଟ କରିସାରିଥିଲା। ଅଂଜଳିର ମୁଣ୍ଡ, ହାତ ଆଉଁସି ଦେଉଥିଲା ସୁନୀତା।

''ଆଗରୁ କାହାକୁ ଦେଖେଇଥିଲେ ? ଇ.ସି.ଜି ରିପୋର୍ଟ ସବୁ ଆଣିଛନ୍ତି ?'' ଡ଼ାକ୍ତରଙ୍କର ଅଳ୍ପ କେତୋଟି ପ୍ରଶ୍ନ, ଅଂଜଳିକୁ ପରୀକ୍ଷା କରି ଆବଶ୍ୟକୀୟ ନିର୍ଦ୍ଦେଶ ଦେଉଥିଲେ ସେ ସହକାରୀ ଡ଼ାକ୍ତର, ସିଷ୍ଟର୍‌ମାନଙ୍କୁ।

''ଏମିତି ଅଳ୍ପ ଅଳ୍ପ ମୁଣ୍ଡବିନ୍ଧା, ଛାତିକଷ୍ଟ, ସେ ଭଲଥିଲେ। ନରମାଲ୍ ଚଳୁଥିଲେ। ଗ୍ୟାସ୍‌ଟ୍ରିକ୍ ପ୍ରବଲେମ୍ ହେଇଥିବ ଭାବିଥିଲୁ। କେବେ କେବେ ଔଷଧ ଖାଆନ୍ତି।''

ବଡ଼ପୁଅ ଡ଼ରଡ଼ରି ଡ଼ାକ୍ତରଙ୍କୁ କହୁଚି। ଅନିରୁଦ୍ଧର ବାକ୍‌ଶକ୍ତି ଲୋପ ପାଇ ଯାଇଥିବା ଭଳି ମନେ ହେଉଥାଏ।

ଡ଼ାକ୍ତର ଉତ୍ତର ହେଉନାହାଁନ୍ତି। ବିରକ୍ତିରେ ସମସ୍ତଙ୍କୁ ଚାହୁଁଥାଆନ୍ତି। ସୁପ୍ରୀତ୍‌କୁ ଡ଼ାକି କହିଲେ, ''ମ୍ୟାସିଭ୍ ଆଟାକ୍। ସେମାନଙ୍କୁ ବୁଝେଇ ଦିଅନ୍ତୁ।''

ଅଂଜଳିର ସ୍ୱାସ୍ଥ୍ୟ ପାଇଁ କେହି ଭାବି ନାହାଁନ୍ତି। କେବେ ଥରେ ଇ.ସି.ଜି, ବ୍ଲଡ଼୍‌ପ୍ରେସର ଦେଖାଯିବା ଉଚିତ, ଏକଥା ଅନିରୁଦ୍ଧ, ସେମାନଙ୍କର ଶିକ୍ଷିତ ଯୋଗ୍ୟର ପୁଅ ଦୁଇଜଣ ମଧ ଚିନ୍ତା କରି ପାରିଲେ ନାହିଁ।

ଶେଷ ସମୟ ଆସିଗଲା। ଅଂଜଳି ସମସ୍ତଙ୍କୁ ଦେଖିଲା। ଶେଷଇଚ୍ଛାରେ ଅନିରୁଦ୍ଧ କୋଳରେ ମୁଣ୍ଡ ରଖି ସୁଖରେ ସୁଖରେ ଚାଲିଗଲା।

—ସୁଖ ! ଏଇ କ'ଣ ସବୁ କିଛି ? ଆହାଃ, ବିଚାରି ଅଂଜଳି !!

ଏତେବେଳଯାଏ ପାର୍କର ବେଞ୍ଚରେ ଚୁପ୍‌ଚାପ୍ ବସିଥିବା ସୁପ୍ରୀତ୍, ସୁନୀତାର ଏମିତି ପଦଟିଏ କଥାରେ ବ୍ୟସ୍ତ ହୋଇଉଠିଲା। ଦୀର୍ଘଶ୍ୱାସ ନେଇ କହିଲା, ''ସବୁ ଅନିରୁଦ୍ଧମାନେ ଏମିତି।''

□ □

# ଶେଷରାତି

—କିଛି କହିଲନି ଯେ ? ଏବେ ଆମେ କ'ଣ କରିବା ?

—ଜିତ୍, ପ୍ଲିଜ୍ ଫାଇଣ୍ଡ୍ ଆଉଟ୍ ଦି ୱେ !

ଅଭିଜିତ୍ ତଥାପି ନୀରବ। ମିନୋରିକୋର ଫୁଲ ଭଳି ସତେଜ ମୁହଁଟି ଝାଉଁଳି ପଡୁଛି। ଅନେକ ଚିନ୍ତାର ଦୁର୍ବିସହତା ତା'ର ସୁନ୍ଦର କୋମଳ ମନଟିକୁ ବିଧ୍ୱସ୍ତ କରିଦେଉଛି।

ଧୀରେ ମିନୋରିକୋର ହାତ ସ୍ପର୍ଶ କଲା ଅଭିଜିତ୍। ମିନୋରିକୋ !! ଅଭିଜିତ୍‌ର ବହୁତ ପୂର୍ବରୁ ଭାବିବାର ଥିଲା। ଏବେ ସେ କ'ଣ କରିବ ? ସେ ଭଗବାନ ନୁହଁ, ଗୀତାର ତତ୍ତ୍ୱଦର୍ଶୀ ସଂଜୟ ନୁହେଁ, କିମ୍ବା ମହାଭାରତର ମହାଜ୍ଞାନୀ ବିଦୂର ନୁହଁ। ଜୀବନର ସ୍ଥିତି ପାଇଁ କ'ଣ ସେ ଚିନ୍ତା କରିପାରିବ ?

ଦୁହିଁଙ୍କ ପାଖରେ ଉତ୍ତର ହଜିଯାଇଥିଲା। ସେମାନେ ପରସ୍ପରକୁ ଚାହିଁ ରହିଲେ ବେଶ୍ କିଛି ସମୟ।

ଜ୍ୟୋସ୍ନାଭିଜା ରାତି। 'ଶହେନ୍‌ଶାହା' ଉତ୍ସବ ମୁଖରିତ। ତନ୍ଦ୍ରାଳସୀ ନାଇଲ୍ ଏବେ ପ୍ରଗଲ୍‌ଭା ହୋଇ ଉଠିଛି। ଅଭିସାରିକାର ବେଶବାସରେ ସୁସଜ୍ଜିତା ସେ। ତା' ବକ୍ଷରେ ଆଉ କେତୋଟି ସୁନ୍ଦର ଜାହାଜ ମଧ୍ୟ ପକ୍ଷ ମେଲିଥିଲେ। ନଭଶ୍ଚୁମ୍ବୀ ସୁପରଷ୍ଟାର୍ ହୋଟେଲମାନେ, ଅନ୍ୟାନ୍ୟ ଅଟ୍ଟାଳିକାମାନଙ୍କରେ ପ୍ରଜ୍ୱଳିତ ଆଲୋକମାଳା ପ୍ରତିବିମ୍ବିତ ହୋଇଥିଲା ସେଇ ଜଳରାଶିରେ।

'ଶହେନ୍‌ଶାହା'ର ଅପର୍ ଡେକ୍‌ର ଏହି ନିଭୃତ ସ୍ଥାନରୁ ରାତ୍ରିର କାଇରୋ

ସହରକୁ ସେ ଦୁହେଁ ସତେକି ପ୍ରଥମ କରି ଦେଖୁଥିଲେ, ଆଖି ଫେରାଇ ହେଉ ନ ଥିଲା ।

ଉପରେ ଚନ୍ଦ୍ର, ନକ୍ଷତ୍ରଖଚିତ କାଇରୋର ଆକାଶ । ଶାନ୍ତ, ସୁଶୀତଳ ସମୀରଣ । ନାଇଲ୍ ତା'ର ନୀଳ ପଣତ ଛୁଆଇଁ ଦେଉଥିଲା ଅଭିଜିତ୍ ମିନୋରିକୋଙ୍କର ଅବସାଦଗ୍ରସ୍ତ ମୁଖମଣ୍ଡଳରେ ।

ତଳ ଡ଼େକ୍ ଦୁଇଟିର ବଡ଼ ହଲ୍‌ମାନଙ୍କରେ ଡ୍ରିଙ୍କ୍ସ, ଡ଼ିନର୍, ଡ୍ୟାନ୍ସ ଓ ମ୍ୟୁଜିକ୍ । ସୁନ୍ଦରୀ ଆରବ ନର୍ତ୍ତକୀର ନୃତ୍ୟ ସଂଗୀତର ଝଂକାରରେ 'ଶହେନଶାହା' ପ୍ରକଂପିତ । ତାହାହିଁ ଥିଲା ନାଇଲ୍ କ୍ରୁଇଜ୍‌ର ମୁଖ୍ୟ ଆକର୍ଷଣ । ସେମାନେ ପୂର୍ଣ୍ଣପ୍ରାଣରେ ଉପଭୋଗ କରୁଥିଲେ ଏବଂ ଦ୍ୱିତୀୟ କ୍ରୁଇଜ୍ ପାଇଁ କୂଳର ସୁଦୃଶ୍ୟ ଟିକେଟ୍‌ଘର ପାଖରେ ପର୍ଯ୍ୟଟକ, ସ୍ଥାନୀୟ ନାଗରିକ କେତେଜଣଙ୍କର ଭିଡ଼ ଲାଗି ରହିଥିଲା 'ଶହେନ୍‌ଶାହା'ର ସାଂଧ୍ୟଯାତ୍ରା ଆରମ୍ଭ ନ ହେଉଣୁ ।

ଏ ସମସ୍ତ ଆକର୍ଷଣକୁ ଏଡ଼ାଇ ଦେଇ ଅଭିଜିତ୍, ମିନୋରିକୋ ଉଠି ଆସିଥିଲେ ଅପରଡ଼େକ୍‌ର ଏଇ ଏକାନ୍ତ ସ୍ଥାନଟିକୁ ଏବଂ ଛୋଟ ଟେବୁଲର ଦୁଇ ପାର୍ଶ୍ୱରେ ଦୁଇଟି ଚେୟାର ଅଧିକାର କରି ବସି ରହିଥିଲେ ବେଶ୍ କିଛି ସମୟ ।

ଅଭିଜିତ୍ ମିନୋରିକୋକୁ କିଛି କହିବ କହିବ ହୋଇ ଚାହିଁ ରହିଲା ତା' ମୁହଁକୁ । ଖାଲି ୱାଇନ୍ ଗ୍ଲାସ୍ ଦୁଇଟି ୱେଟର୍ ନେଇଯାଇଛି ଅନେକବେଳୁ ।

ଏବେ ମିନୋରିକୋ ରୁମାଲ୍ ଛୁଆଇଁ ନେଲା ତା' ଦୁଇ ଆଖିରେ । ଅଭିଜିତ୍‌କୁ ଖୁବ୍ କରୁଣ ଦିଶୁଥିଲା ତା'ର ମୁହଁ ।

ସେମାନେ ପରସ୍ପରକୁ ପ୍ରଥମ କରି ଭେଟିଥିବା ଅତୀତର ସେଇ ରାତିଟି ଥିଲା ସେ ଦୁହିଁଙ୍କ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ସମୟ । ଇଜିପ୍ଟ ଦୂତାବାସର ଏକ ପାର୍ଟିରେ ପରିଚୟ ହୁଏ ମିନୋରିକୋ ଇସିୟାମା ସହ । ଜଣେ ଡିପ୍ଲୋମାଟ୍‌ଙ୍କର ବନ୍ଧୁ ଭାବରେ ମିନୋରିକୋ ଆସିଥିଲା ସେଦିନ । ପୃଥିବୀର ବିଭିନ୍ନ ଦେଶ ଦେଖିବା, ଭାଷା ଶିଖିବାର ଆଗ୍ରହ ନେଇ ଜାପାନରୁ ଆସିଥିବା ଏଇ ସୁନ୍ଦରୀ ଝିଅଟି ଅନ୍ୟମାନଙ୍କ ସହ ବେଶ୍ ଆଳାପ କରୁଥିଲା । ଅଭିଜିତ୍‌ର ସ୍ୱଳ୍ପ ପରିଚୟ, ଓଠରେ ଆତ୍ମୀୟତାର ହସ ।

– ଆପଣଙ୍କ ଚେହେରାରେ, ବ୍ୟବହାରରେ ଇଣ୍ଡିଆର ଆତ୍ମାକୁ ମୁଁ ଚିହ୍ନିନେଇ ପାରିଛି ।

– ରିୟେଲି ?

– ୟା, ୟୁ ଆର୍ ଏ ପର୍‌ଫେକ୍ଟ ଇଣ୍ଡିଆନ୍ !

ମିନୋରିକୋ ତା'ର କାର୍ଡ଼ ଦେଇଥିଲା । ନିଜେ ଯତ୍ନରେ ସାଇତି ରଖିଥିଲା ଅଭିଜିତ୍ ଆଚାର୍ଯ୍ୟର ଘର, ଅଫିସ୍‌ର ଠିକଣା, ଟେଲିଫୋନ୍ ନମ୍ବର ଛପା ହୋଇଥିବା ଭିଜିଟିଂ କାର୍ଡ଼ଟି ।

ତା'ପରେ କେତେଥର ଦେଖା । ଛୁଟୀ ଦିନରେ ମିନୋରିକୋର ଆସିବା, ଅଭିଜିତ୍ ଘରେ ଦିନେ, ଦୁଇଦିନ ରହିବା ସାଧାରଣ ଅଭ୍ୟାସରେ ପରିଣତ ହୋଇଥିଲା ।

ଫାରାଫ୍ରା ! ମରୁଦ୍ୟାନର ଛୋଟ ଗାଁଟିଏ । ଚାରିପଟେ ସବୁଜିମା, ପାହାଡ, ପରସ୍ତ ପରସ୍ତ ବାଲିସ୍ତୂପ, ଉଷ୍ଣପ୍ରସ୍ରବଣ । ସେଇ ଗାଁ ଲୋକଙ୍କର ଆତିଥ୍ୟ । କାଦୁଅରେ ଲିପାପୋଛା ଛୋଟ କୁଡିଆଟିରେ ସେମାନେ ଦୁଇଜଣ; ଅଭିଜିତ୍, ମିନୋରିକୋ !

ନୀଳରଂଗର କାଛରେ ଠାକୁର, ଠାକୁରାଣୀ, ବିଲେଇ, ବାଘ, ଚଢ଼େଇର ଚିତ୍ରକଳା । ଲୋକଙ୍କ ବିଶ୍ୱାସ ନୀଳରଙ୍ଗକୁ ଭୂତ, ପ୍ରେତଙ୍କର ଖୁବ୍ ଭୟ । ନଜର ଲାଗିଯିବାର ଆତଙ୍କ !

ଗତ ଜନ୍ମର କଥା ଭଳି ଲାଗୁଛି ।

ଅଭିଜିତ୍ ନିଜେ ଭାବିପାରେ ନାହିଁ ଏ ସଂପର୍କ କିମିତି ଗଢ଼ି ଉଠିଥିଲା ।

– ସେ ଝିଅଟି କିଏ, ମିଷ୍ଟର ଆଚାର୍ଯ୍ୟ ?

– ଏଠି ତୁମ ଫ୍ଲାଟ୍‌ରେ ?

ସେମାନଙ୍କର ଅନିସନ୍ଧିତ୍ସୁ ପ୍ରଶ୍ନ ।

''ଏମିତି ଆସିଛି ଜଣେ ଫ୍ରେଣ୍ଡ୍ ।'' ଏଭଳି ଉତ୍ତର କେତେଦିନ ଦିଆଯାଇ ପାରେ ?

ଜଣେ ଅବିବାହିତ ଡିପ୍ଲୋମାଟ୍‌ଙ୍କ ଘରେ ଅନ୍ୟ ଦେଶର ଝିଅ ଜଣେ ରହୁଥିବା, ଏଥିନେଇ ଯେଉଁ ସମସ୍ୟା, ତା' କ'ଣ ବୁଝୁ ନଥିଲା ଅଭିଜିତ୍ ?

ସମସ୍ୟା ତ ଆସିଛି ଅନେକ ସମୟରେ । କେତେଦିନ ମିନୋରିକୋକୁ ନେଇ ଲୁଚକାଳି ଖେଳୁଥିବ ସେ ? କାହିଁକି ଘରେ ସେ ପାର୍ଟି ଦେଇପାରେ ନାହିଁ ? ଘରେ ଯାହା ଖର୍ଚ୍ଚ, ହୋଟେଲରେ ତା'ର ଚାରିଗୁଣ ଅର୍ଥ ଦେବାକୁ ହୁଏ ।

ବାହାରୁ ଆସୁଥିବା, ଇଣ୍ଡିଆରୁ ଆସୁଥିବା ବଂଧୁମାନଙ୍କୁ ବାଧ୍ୟତଃ ହୋଟେଲ୍‌ରେ ରଖାଇବାର ବ୍ୟବସ୍ଥା କରି ସେମାନଙ୍କର ରହିବା ଖର୍ଚ୍ଚଟା ଅନେକ ସମୟରେ ନିଜେ ଅଭିଜିତ୍ ତୁଲାଇ ନିଏ ଭଦ୍ରାମୀ ଦୃଷ୍ଟିରୁ।

ନିମ୍ନ ମଧ୍ୟବିତ୍ତ ପରିବାରର ପ୍ରଥମ ସଂତାନ ଅଭିଜିତ୍। ସାମାନ୍ୟ କିଛି ଜମିବାଡି, ବାପାଙ୍କର ସ୍ୱଳ୍ପ ପେନ୍‌ସନ୍ ଟଙ୍କାରେ ଘର ଚଳେ। ପନ୍ଦରଟା ଦିନ ନ ଯାଉଣୁ ହାତରୁ ପଇସା ସରେ। ସାନଭାଇର ପାଠ ଶେଷ ହୋଇ ନାହିଁ। ଭଉଣୀ ଦୁହିଁଙ୍କର ବିବାହ ଦେଇ ବାପା ନିଶ୍ଚିନ୍ତ ହୋଇଥିଲେ। ଅଭିଜିତ୍‌ର ପାଠ, ଭଉଣୀମାନଙ୍କର ବାହାଘର ପାଇଁ କିଛି ଜମି ବିକ୍ରି ହୋଇ ଯାଇଛି।

ସେମାନଙ୍କ ଚଳିବାପାଇଁ ନିଅଣ୍ଟ ଅର୍ଥ କୋଉଠୁ ଆସେ? ଖାଇ ପିନ୍ଧି ଚଳିବା ବ୍ୟତୀତ ଦେହ ଖରାପ ପାଇଁ ଔଷଧ, ଡାକ୍ତର ଖର୍ଚ୍ଚ, ଅନ୍ୟାନ୍ୟ ବହୁପ୍ରକାର ବାହାର ଖର୍ଚ୍ଚ।

କେହି ତାକୁ ଅସୁବିଧା କରିନାହିଁ, ଟଙ୍କା ପଠାଇବାକୁ ବାଧ୍ୟ କରି ନାହାଁନ୍ତି ସେମାନେ। ଏସବୁ ବୁଝୁଥିଲେ ବି କାହିଁକି ସେ ନନାଙ୍କ ପାଖକୁ ଦିନେହେଲେ ଟଙ୍କା ପଠାଇ ପାରି ନାହିଁ? ଭବିଷ୍ୟତ ପାଇଁ ଏମିତି କିଛି ସଂଚିତ ଅର୍ଥ ନାହିଁ ମଧ୍ୟ।

ବିଦାୟୀ ଡିପ୍ଲୋମାଟ୍ ବଂଧୁ ଜଣଙ୍କର ଗାଡିଟି କ୍ରୟ କରିଥିବା ବିଷୟ ନନାଙ୍କୁ ଜଣାଇ ଥିଲା ଅଭିଜିତ୍। ଏ ପର୍ଯ୍ୟନ୍ତ ଧାର ଟଙ୍କା ନ ଶୁଝି ପାରିବା ହେତୁ ଇଚ୍ଛା କଲେ ବି କିଛି ଟଙ୍କା ପଠାଇ ପାରୁ ନଥିବା ବିଷୟ ଅନ୍ୟ ଭାବରେ ଲେଖିଥିଲା ସେ।

ନୂଆ ଚାକିରି, ଏକାକୀ ଜୀବନରେ ମିନୋରିକୋ ସହ ବଂଧୁତା।

– ମୁଁ ଆପଣଙ୍କ ଘରକୁ ଆସିଲେ କ'ଣ ତଡିଦେବେ?

– ୟୁ ଆର୍ ମୋଷ୍ଟ ୱେଲ୍‌କମ୍।

– ଏସବୁ ଫରମାଲ୍ କଥା।

– ଆଉ କ'ଣ କହିବି? ଜାଣି ନାହିଁ।

ଅଭିଜିତ୍ ମାତ୍ର ପଦେ କଥାରେ ତା'ର ସରଳ ହୃଦୟର ପରିଚୟ ଦେଇଥିଲା।

ମିନୋରିକୋ ପାଖରେ ଅଭିଜିତ୍ ଫ୍ଲାଟ୍‌ର ଡୁପ୍ଲିକେଟ୍ ଚାବି। ସେ ଚାବି ଖୋଲି ଘରେ ପହଞ୍ଚି ଦେଖେ ଅଭିଜିତ୍ ନାହିଁ। ଛୋଟ ସ୍ଲିପ୍ ଖଣ୍ଡେ– ମୁଁ

ପାର୍ଟି ଦେଉଛି । ବିଳମ୍ବ ରାତିରେ ଫେରିବି ।

ଏ ସବୁରେ ଅଭ୍ୟସ୍ତ ମିନୋରିକୋ । ତା' ନେଇ ଅଭିଜିତ୍‌ର କ'ଣ ଅସୁବିଧା ହୁଏ, ସେ ସବୁ ନ ବୁଝିବା ଭଳି ଚଳୁଥିଲେ ଦୁହେଁ । ଭବିଷ୍ୟତରେ ଗୋଟିଏ ଆଶା, ବିବାହ !

ଏ ସହରରେ ସବୁଠି ନାଇଲ୍‌ର ପ୍ରତିପତ୍ତି । ବାହାର ବାଲ୍‌କନିରେ କ୍ଲାନ୍ତ ମିନୋରିକୋ ଅପେକ୍ଷା କରେ ଅଭିଜିତ୍‌କୁ । ନାଇଲ୍‌ର ଜଳରାଶି ଛୁଇଁ ଭାସି ଆସୁଥିବା ମୃଦୁ ମଳୟରେ ମିନୋରିକୋ ଉଲ୍ଲସିତ ହୁଏ । ସୁଉଚ୍ଚ କାଇରୋଟାୱାର୍‌ର ଉଚ୍ଚତାକୁ ମନେ ମନେ ମାପିବସେ ସେ । ସମୟ ସରେ ନାହିଁ । ପାର୍ଟି ଚାଲିଥାଏ ବିଳମ୍ବ ରାତି ପର୍ଯ୍ୟନ୍ତ ।

କ୍ଲାନ୍ତ ଶ୍ରାନ୍ତ ଅଭିଜିତ୍ ଫେରି ଆସି ଦେଖେ କିଏ ତା'ର ଅସଜଡା କୋଠରୀମାନଙ୍କରେ କାଉଁରୀ କାଠି ଛୁଆଇଁ ଦେଇଛି ।

ଲିଭିଂ ରୁମ୍‌ର ସୋଫା ପାଖ ସାଇଡ୍ ଟେବୁଲ୍‌ର ପୁଷ୍ପସଜ୍ଜା ସୂଚେଇ ଦିଏ, ମିନୋରିକୋ ଆସିଛି ।

ରୋଷେଇ ଘର କୁକିଂରେଞ୍ଜ୍, ଫ୍ରିଜ୍, ମାଇକ୍ରୋୱେଭ୍, ଟୋଷ୍ଟର୍, ଆବଶ୍ୟକୀୟ ବାସନ ସଫା ହୋଇ ଚକ୍ ଚକ୍ କରୁଥାଏ । ଅଭ୍ୟସ୍ତ ଘରଣୀ ଭଳି କାମରେ ଲାଗିଥାଏ ମିନୋରିକୋ । ସାତଦିନର ରଂଧା ପ୍ରସ୍ତୁତ କରି ରଖେ । ଶୋଇବାଘରର ଚଦର, ତକିଆ ଖୋଳ, ବେଡ୍ କଭର୍ ବଦଳା ହୋଇଛି । ପ୍ରତ୍ୟେକଟି ଅସଜଡା ଜିନିଷ ଯଥା ସ୍ଥାନରେ ସାଇତି ରଖେ ମିନୋରିକୋ, ଏପରିକି କାନ୍ଥର ପେଣ୍ଟିଂ କେତୋଟି ମଧ ସଫାହୋଇ ଚକ୍ ଚକ୍ କରୁଥାଏ ।

—ଅଭିଜିତ୍, କ୍ୟାନ୍ ଆଇ ଷ୍ଟେ ଉଇଥ୍ ଇଉ ?

—ଇୟେସ୍, ତୁମକୁ ଯିବା ପାଇଁ କିଏ କହୁଛି ?

—ଥଟ୍ଟା ନୁହଁ ଅଭିଜିତ୍, ସାକୁରା ଜାପାନ୍ ଫେରି ଯାଉଛି । ଏକା ଏକା ଘର ନେଇ ରହିବା ସମ୍ଭବପର ନୁହେଁ ।

—ଏତେ ଚିନ୍ତା ? ଏବେ ଥାଉ ସେ ସବୁ । ଅନେକ ରାତି ହେଇଛି ।

ମନ ଭିତରେ ଉଲ୍ଲସିତ ଆନନ୍ଦ ସହ ଆତଙ୍କର ଏକ କଳାଛାଇ ଅଭିଜିତ୍‌କୁ ଅସ୍ଥିର କରୁଥିବା ବିଷୟ ମିନୋରିକୋକୁ ଜାଣିବାକୁ ଦେଇ ନ ଥିଲା ସେ ।

ଦୂତାବାସର ଆଇନ୍‌ବିରୁଦ୍ଧ କାର୍ଯ୍ୟ ! ତା' ସହ ମିନୋରିକୋ ଏକା ଫ୍ଲାଟ୍‌ରେ

ରହେ ! ଅଭିଜିତ୍‌ର ଚିନ୍ତା ସୀମା ଅତିକ୍ରମ କରିଛି ।

ମିନୋରିକୋର ଜିଦ୍ ଲାଗିଛି, ସେ ଇଣ୍ଡିଆ ଯିବ । ବୁଲାବୁଲି କରି ଦେଖିବ କେତେକ ସ୍ଥାନ । ଅଭିଜିତ୍‌ର ବାପା, ମା, ଭାଇ, ଭଉଣୀଙ୍କୁ ଥରେ ଦେଖି ଆସିବାକୁ ତା'ର ଖୁବ୍ ଇଚ୍ଛା ।

ଯାଉ, ଏମିତି ବିତିଯାଉ କେତେଦିନ ।

ଅଭିଜିତ୍ ଯାହା କେବେ କହିନାହିଁ, ତା' ସେମାନେ ବୁଝିଲେ କିପରି ? ନୂଆ ଗହଣା, ଶାଢ଼ି, ସାଲଓ୍ବାର୍ କୁର୍ତ୍ତା, ଭାବୀ ବଧୂପାଇଁ ସୁନ୍ଦର ଉପହାରମାନ । ସେମାନଙ୍କର ଏଭଳି ଆନ୍ତରିକ ଶ୍ରଦ୍ଧା, ଏତେ ବେଶୀ ନିଜର ଭାବ !

ଅଭିଜିତ୍ ଫୋନ୍‌ରେ ଶୁଣିଲା ମିନୋରିକୋର ଉଚ୍ଛ୍ୱସିତ ପ୍ରଶଂସା । ତା'ର ନନା, ବୋଉ, ଭାଇ, ଭଉଣୀ ତାକୁ ଗ୍ରହଣ କରି ନେଇଛନ୍ତି ।

ଅଥଚ ପରିସ୍ଥିତି ସେମାନଙ୍କୁ କେତେ ଦୁଃଖୀ କରିଛି ! ମିନୋରିକୋ କ୍ଷଣିକରେ ଭୁଲି ଯାଉଛି ଏସବୁ ।

—''କ'ଣ ବୁଝିଲ, ଜିଦ୍ ? କୁହନା ? ଆମେ ଡେରି କରିବା ନାହିଁ । ଆସିବା ବେଳେ ବୋଉ ବାରମ୍ବାର କହିଛନ୍ତି ।'' ଇଣ୍ଡିଆରୁ ଫେରି ଜିଦ୍ କରେ ମିନୋରିକୋ ।

ଅନେକ ସମୟ ନୀରବରେ ବସିରହିଥିବା ଅଭିଜିତ୍ ମୁହଁଖୋଲେ, ''ମୁଁ ଚାହେଁ ବିବାହ । ନ ହେଲେ ଖୁବ୍ ଅସୁବିଧା । ପ୍ରବ୍ଲେମ୍ ଦେଖୁଛ ତ ?''

ମିନୋରିକୋ ବିଷଣ୍ଣ ହେଲା, ତକିଆରେ ମୁହଁ ପୋତି ବସି ରହିଲା କିଛି ସମୟ ।

''କହିଛି ତ ତୁମେ ସିଟିଜେନ୍‌ସିପ୍ ଛାଡିବ । ନଚେତ୍ ମୁଁ ଏ ଚାକିରି ଛାଡିଦେବି, ଯାହାକି ମୋ ପାଇଁ ଆଦୌ ସମ୍ଭବପର ନୁହେଁ ।'' ଅଭିଜିତ୍ ସ୍ପଷ୍ଟ ଭାବରେ କହିଥିଲା ।

ସେଇଦିନରୁ ମିନୋରିକୋ ଉତ୍ତର ଦେଇନାହିଁ । ହସି ହସି ଲୋଟି ଯାଇ ନାହିଁ ଅଭିଜିତ୍ ଛାତିରେ । ଚଳଚଞ୍ଚଳ ଝରଣାଟି ସ୍ଥିର ହୋଇଯାଇଛି । ମେସିନ୍ କଣ୍ଢେଇଟି ଭଳି ଚଳ ପ୍ରଚଳ ହେଉଛି ସେ ।

ଅଭିଜିତ୍, ସେ ଖାଉଛନ୍ତି । ଟି.ଭି. ଖୋଲି ସଂବାଦ, ଅନ୍ୟାନ୍ୟ ପ୍ରୋଗ୍ରାମ୍ ଦେଖୁଛନ୍ତି । ଅଭିଜିତ୍ ଅଫିସ୍‌ରୁ ଫେରି ଦେଖେ ମିନୋରିକୋ ସେପାଖ ଖୋଲା

ବାଲ୍‌କନିରେ ବସି ଅନିର୍ଦ୍ଦିଷ୍ଟ ଭାବେ ଚାହିଁ ରହିଛି। ବାହାରକୁ ଯାଇ ନାହିଁ ବୋଧହୁଏ। ବୁଲାବୁଲି ବନ୍ଦ। ଖାଇବା, ଶୋଇବା ବ୍ୟତୀତ ଅନ୍ୟ କିଛି କାର୍ଯ୍ୟ ଥାଇ ପାରେ, ତା' ହୁଏତ ଭୁଲିଯାଇଛି ମିନୋରିକୋ।

ଅନ୍ୟାୟ! ଖୁବ୍ ଅନ୍ୟାୟ! କିନ୍ତୁ ଅଭିଜିତ୍ କ'ଣ କରି ପାରିବ? ନିଜ ଭିତରର ଅହରହ ସଂଗ୍ରାମର ସ୍ୱରୂପକୁ କିଭଳି ଭାଷା ଦେଇ ବୁଝେଇବ ସେ ମିନୋରିକୋକୁ!

ଏ ପାଖରେ ଦେଶର ମୋହ, ଅନ୍ୟ ପାଖରେ ଅଭିଜିତ୍? ଏବେ ମିନୋରିକୋ ନିଜେ ସ୍ଥିର କରୁ। ସେ କହୁ, କ'ଣ କରିବ।

ଏଇ କେତେଦିନ ହେବ ନିଜ ଭିତରେ ଧୀରେ ଧୀରେ ଭାଙ୍ଗି ଯାଉଛି ଅଭିଜିତ୍। କାହାକୁ କହିହେଉ ନାହିଁ। ଦେଖେଇ ପାରୁନାହିଁ ହୃଦୟର ସେଇ ଭଗ୍ନାବଶେଷ।

ସେଦିନ ଡିପ୍ଲୋମାଟିକ୍ ବ୍ୟାଗ୍‌ରେ ଆସିଥିବା ତା'ଙ୍କ କେତୋଟି ଚିଠି ମଧ୍ୟରେ ଥିଲା ସେଇ ଚିଠି ଖଣ୍ଡିକ। ଦୁଃଖର ଚରମ ସୀମାରେ ପହଞ୍ଚିଥିଲା ଅଭିଜିତ୍।

ଶୀଘ୍ର ଫେରି ଆସି ଦେଖିଲା, ମିନୋରିକୋ ତଥାପି ଶୋଇ ରହିଛି ବିଛଣାରେ। ପରିତ୍ୟକ୍ତ ଖାଲି ଚା' କପ୍ କେତୋଟି ଇତସ୍ତତଃ ହୋଇ ରହିଛି।

ଅଭିଜିତ୍ ମୁହଁ ଧୋଇନେଇ ନିଜକୁ ସତେଜ ରଖିବାର ଚେଷ୍ଟାକଲା। ସେଇ ବିଛଣାଧାରରେ ବସି ଧୀରେ କହିଲା, "ମିନୋରିକୋ, ଦେହ ଭଲ ନାହିଁ କି?"

ସତେ ଯେମିତି ଏତିକି ଶୁଣିବା ପାଇଁ ଅନେକ ଦିନରୁ ଅପେକ୍ଷା କରିଥିଲା ମିନୋରିକୋ। ଅଭିଜିତ୍‌କୁ କିଛି କ୍ଷଣ ଚାହିଁ ରହି ହଠାତ୍ କାନ୍ଦି ପକାଇଲା ସେ। ତାକୁ କୋଳେଇ ନେଇ ଅଭିଜିତ୍ ତା'ର ଲୁହ ପୋଛି ଦେଇ କହିଲା, "ନାଇଲକ୍ରୁଇଜ୍‌ର ଟିକେଟ୍ ଦୁଇଟି ନେଇ ଆସିଚି। କେବେଠୁଁ ବାହାରକୁ ଯାଇ ନାହାନ୍ତି ଆମେ। ଆସ, ଶୀଘ୍ର ବାହାର। ଡେରି କରନା।"

ମିନୋରିକୋ ଓଠରେ ଦାନ୍ତ ଦେଇ ଶୂନ୍ୟକୁ ଚାହିଁ କ'ଣ ଭାବିହେଲା। ପାଞ୍ଚ ମିନିଟ୍‌ରେ ପ୍ରସ୍ତୁତ ହେଇ ଅଭିଜିତ୍ ସହ ଲିଫ୍ଟ୍‌ରେ ତଳକୁ ଓହ୍ଲାଇ ଆସିଲା।

ୱେଟର୍ ବିଲ୍ ଦେଇ ଅପେକ୍ଷା କରିଛି। 'ଶହେନ୍‌ଶାହା'ର ସାଂଧ୍ୟଯାତ୍ରା ଶେଷ ହୋଇ ଆସୁଛି। ତଳ ଡେକ୍‌ମାନଙ୍କରେ ଅର୍କେଷ୍ଟ୍ରାର ଉଦ୍ଦାମ ଶବ୍ଦ ସ୍ତିମିତ ହୋଇଛି।

ଅଭିଜିତ୍ ତଥାପି କହିପାରି ନାହିଁ ମିନୋରିକୋକୁ ସେଇ ଚିଠିଟି ସଂପର୍କରେ।

ଓ୍ୱେଟରକୁ ପକେଟରୁ ପର୍ସ କାଢ଼ି ତରତରରେ କେତୋଟି ପାଉଣ୍ଡ୍ ଧରେଇ ଦେଲା ଅଭିଜିତ୍। ପର୍ସରୁ ଖସି ପଡୁଥିବା କାଗଜ ଖଣ୍ଡିକ ଗୋଟାଇ ନେଲା ମିନୋରିକୋ। ଲଣ୍ଡନ୍‌ରେ ରହୁଥିବା ଅଭିଜିତ୍‌ର ଜଣେ ପିଉସୀ କାଇରୋ ଆସୁଛନ୍ତି। ସେମାନେ ଇଙ୍ଗଲାଇଣ୍ଡ୍‌ର ଡେଲା-ଆଭିଭ୍‌ରେ ପହଞ୍ଚି ଯାଇଥିବେ। ସେଠାରୁ ଫୋନ୍ କରିଥିବେ ଅଭିଜିତ୍‌ର ଅଫିସ୍‌କୁ।

ମାତ୍ର କେତେ ଘଣ୍ଟା ବାକି। ସେମାନେ ପହଞ୍ଚିଯିବେ। ଆଉ ଏଠି ବିଳମ୍ବ କରିବା ଠିକ୍ ନୁହଁ।

ଅଭିଜିତ୍‌ର ହାତ ଟାଣି ତରତରରେ ତଳ ଡେକ୍‌କୁ ଓହ୍ଲାଇ ଆସିଲା ମିନୋରିକୋ। ପାର୍କିଂ ସ୍ଥାନକୁ ବାହାରି ଆସିଲେ ସେ ଦୁହେଁ।

ଅଭିଜିତ୍‌ର ଫ୍ଲାଟ୍‌ରେ ପହଞ୍ଚିବାକୁ ପ୍ରାୟ ଘଣ୍ଟାଏ ପାଖାପାଖି ଲାଗିଲା। ରାସ୍ତାରେ ମିନୋରିକୋକୁ କିଛି କହି ନଥିଲା ଅଭିଜିତ୍।

ଏବେ ଏ ଅନ୍ୟ ଜଣେ ମିନୋରିକୋ। ସବୁଥର ଭଳି ଘରକୁ କିଏ ଆସିବାର ହେଲେ ନିଜ ହାତରେ ସୁନ୍ଦର କରି ଏ ଘରଟି ସଜାଡ଼ି ଦିଏ ସେ। ନିଜେ ବାହାରକୁ ଯାଇ ହଷ୍ଟେଲ୍‌ରେ ରହିଯାଏ ସେଇ କେତେଦିନ।

ଏବେ ତାହାହିଁ ଦେଖୁଛି ଅଭିଜିତ୍। ଦୀର୍ଘ ସାତ ଦିନ ଧରି ମନସ୍ତାପରେ ଘରର ଯତ୍ନ ନେଇ ପାରି ନାହିଁ, ସେଥିପାଇଁ ବେଶ୍ କିଛି ପରିଶ୍ରମ କରିବାକୁ ହେଉଛି ମିନୋରିକୋକୁ। ସାଧ୍ୟମତେ ସାହାଯ୍ୟ କରୁଛି ଅଭିଜିତ୍।

ନିଜର ପ୍ରତ୍ୟେକଟି ଜିନିଷ ଟିକିନିଖି ଭାବେ ପ୍ୟାକ୍ କରୁଛି ମିନୋରିକୋ। ଏମିତିକି ଅଭିଜିତ୍ ପାଖରେ ଥିବା ତା'ର ସମସ୍ତ ଫଟୋ, କେତେଖଣ୍ଡ ଚିଠି ମଧ୍ୟ।

''ଏସବୁ କାହିଁକି ନେଇ ଯାଉଛ? ପିଉସା, ପିଉସୀ ମୋ ବ୍ୟକ୍ତିଗତ ଜିନିଷ ପତ୍ର ଆଦୌ ଦେଖିବେ ନାହିଁ।''

ଅଭିଜିତ୍‌କୁ ଉତ୍ତର ଦେଲା ନାହିଁ ମିନୋରିକୋ, ଟିକିଏ ହସିଲା।

''ମିନୋରିକୋ। ଏ କ'ଣ କରୁଛ? ମୁଁ ଯାହା କହିଲି ଶୁଣି ପାରିଲ ନାହିଁ?''

ଅଭିଜିତ୍ ବିରକ୍ତ ହୋଇ ଉଠିଲା। ସାରା ରାତି ଘର ସଜାଡ଼ି କ୍ଲାନ୍ତ ହୋଇ ପଡ଼ିଥିଲା ମିନୋରିକୋ।

ଏବେ ସେ ସହଜ ଭାବରେ କହିଲା, ‘‘ତୁମେ ମୋତେ ସ୍ୱାର୍ଥପର କହିପାର। କିନ୍ତୁ ମୁଁ ନିରୂପାୟ। ମୋ ଦେଶ ମୋତେ ବାନ୍ଧି ରଖିଛି। ମୁଁ ତାକୁ ପର କରି ପାରିଲି ନାହିଁ। ଜିତ୍, ଆମ ପାଖରେ ଆଉ ରାସ୍ତା ନାହିଁ? ତୁମେ, ମୁଁ, ଏଇ ରାତ୍ରିଟି ମାତ୍ର। ଦୟାକରି ମୋ ଉପରେ ବିରକ୍ତ ହୁଅ ନାହିଁ।’’

‘‘ମିନୋରିକୋ !’’

ମିନୋରିକୋ ସ୍ଥିର, ଶାନ୍ତ ଭାବରେ ବିଛଣାରେ ଶୋଇ ରହିଲା।

ଅଭିଜିତ୍ ଉପରେ ସାରା ଘରଟି ଭାଙ୍ଗି ପଡ଼ିଲା ଯେମିତି। ନିଜକୁ ସଂଭାଳି ନ ପାରି ପାଗଳଙ୍କ ଭଳି ମିନୋରିକୋକୁ ପାଖକୁ ନେଇ ଆସିଲା ସେ। ମିନୋରିକୋ ଅଶ୍ରୁସ୍ନାନ କରୁଥିଲା। ଦୀର୍ଘ କେତେ ସମୟ ସେମାନେ ପରସ୍ପରର ଆଲିଙ୍ଗନରେ ଆବଦ୍ଧ ରହିଲେ।

ବାହାରେ ପାଖ ଗଛରୁ ରାତ୍ରିପକ୍ଷୀ ଡ଼େଣାଛାଟି ଉଡ଼ିଯାଉଥିଲା। କାଇରୋ ଆକାଶରୁ ଅଂଧକାର ପୋଛି ହୋଇ ଆସୁଛି।

ମିନୋରିକୋ ହାତରୁ ଭାରୀ ସୁଟ୍‌କେଶ୍, କିଟ୍ ବ୍ୟାଗ୍ ଦୁଇଟି ନିଜେ ନେଇ ଆସିଲା ଅଭିଜିତ୍। ରାସ୍ତା ପାଖକୁ ଓହ୍ଲାଇ ଯିବାବେଳେ ସେମାନେ ପରସ୍ପରକୁ ଥରଟିଏ ମାତ୍ର ଚାହିଁ ରହିଲେ।

ଟ୍ୟାକ୍ସିରେ ବସିବାବେଳେ ମିନୋରିକୋ ହସି ହସି କହିଲା, ‘‘ବାୟ୍, ଅଭିଜିତ୍। ମୋଠୁଁ ଚିଠି ଆଶା କରିବ ନାହିଁ। ତୁମର ନୂଆ ଜୀବନ ପାଇଁ ଅନେକ ଶୁଭେଚ୍ଛା...’’

ସେମିତି ଅଂଧାରରେ ଅନେକ ସମୟ ପର୍ଯ୍ୟନ୍ତ ଏକାକୀ ଠିଆ ହୋଇ ରହିଥିଲା ଅଭିଜିତ୍। ଆଖି ସାମନାରୁ ଟ୍ୟାକ୍ସିଟି ଲୁଚିଗଲେ ମଧ୍ୟ ଘର ଭିତରକୁ ଫେରିଯିବାର ସାହସ ନ ଥିଲା ତା’ର।

□ □

# ଆକାଶ କାନ୍ଦୁଚି

—ତାକୁ କିଏ ମାଇଲା କି, ଆଈ ?

—କିଏ ଲୋ କାହିଁ ?

—ଦେଖୁନୁ କି କାନ୍ଦ ତା'ର ! ଅସରା ଅସରା ଲୁହ । ତା' ବୋଉ ନିଶ୍ଚେ ବାଡ଼େଇଚି ।

—କୁନ୍ନୁମୁନିଲୋ, ତୋ ବୋଉ ତତେ ମାଇଲା କି ଆଜି ? ଭାଇ ସାଙ୍ଗରେ ଲାଗୁଥିଲୁ ? ତା'କୁ ମୁଁ ଛମା ଝିଅ କରିବିନି । ପଠେଇ ଦେବି ତା' ଶାଶୁଘରକୁ ।

ମୁହଁ ଫୁଲେଇ ଠିଆ ହୋଇଛି କୁସୁମ । ସେମିତି ଚାହିଁଥାଏ ବାହାରକୁ । ଆଈର ଗେହ୍ଲା ଆହୁରି ବେଶୀ ବେଶୀ ଦରକାର ।

ଚତୁର୍ମାସ୍ୟା ଝଡ଼ ଲାଗିରହିଛି ଦୁଇଦିନ ହେଲା । ଝଡ଼ ବତାସରେ ଅଜାଘର ବାଡ଼ିରେ ଗଛ ସବୁ ଦୋହଲୁଥାଏ । ବଢ଼ିପାଣି ଭଳି ପାଣି ଜମିଯାଇ ଘରଟାକୁ ବୁଡ଼େଇ ଦେବାକୁ ବସିଲାଣି । ଲାଗୁଥାଏ କ୍ଷଣକେ ବଡ଼ ଚାଳଘରଟା ଖଣ୍ଡ ଖଣ୍ଡ ହେଇ ଭାଙ୍ଗି ଭାସିଯିବ ସେ ପାଣିରେ ।

ପାଞ୍ଚ ଛଅ ବର୍ଷର ଝିଅ କୁସୁମ । ଡ଼ରଭୟ ନାହିଁ, ଦୌଡ଼ିଗଲା ପାହାଚ ତଳକୁ । ପାଦରେ ପାଣି କଚ କଚ କରି ଭିଜିବାରେ କି ମଜା !

ଛାଟ ଖଣ୍ଡେ ଧରି ଧାଇଁ ଆସିଲା ବୋଉ ।

ଆଈଲୋ, ଏଁ... ଏଁ...

ମାଡ଼ ନ ବସୁଣୁ ଅତର୍କରେ କୁହାଟ ଛାଡୁଛି କୁସୁମ । ଆଈ ପାନ ଖଣ୍ଡେ ଖାଇବାକୁ ଘର ଭିତରକୁ ଉଠିଯାଇଥିଲା । ଧାଇଁ ଆସି ତାକୁ କାଖେଇ ପକାଇଲା ।

ଦେହ ମୁଣ୍ଡ କାନିରେ ପୋଛିଦେଲା । ଆଈ କାନ୍ଧରେ ମୁହଁ ଲୁଚେଇଛି କୁସୁମ । ବୋଉର ଗୋରା ଉଜ୍ଜଳ ମୁହଁଟା ଶେତା ଦିଶୁଥିଲା । ତେବେକେ ତା' ରୂପ ସେମିତି ଥାଏ । ଦାଉ ଦାଉ ଜଳୁଥାଏ ଚାରେଣିଆ ସିନ୍ଦୂର ଟୋପାଟା । ମୋଟା ନୀଳରଂଗ, ନାଲିଧଡ଼ିଆ ଖଦି ଖଣ୍ଡିକରେ ସେ ଦୁର୍ଗାଦେବୀ ମୂର୍ତ୍ତି ଭଳି ଦିଶୁଥାଏ ।

ଛତା ଖଣ୍ଡିଏ ଧରି ଅଜା ବିସ୍ମୟର ଗଥେ ବାଉଁଶ ଧଡ଼ା ଖୋଲି ପଶି ଆସୁଛନ୍ତି । ବାହାରକୁ ଯାଇଥିଲେ ନିଶାପ କରି । ଗାଁର ସବୁକାମକୁ ଖୋଜା ପଡ଼େ । ପୋଖତ ମାମଲତକାର ।

ରଂଗିଆ ପାଣ ମଦ ପିଇ ଗଡୁଚି । ଘରେ ଚାରି ପ୍ରାଣୀ ଓପାସ । ଭାଗିଜାକୁ ମାଡ଼ ମାରି ସରାଗାତ ଖୋଲି ଟଂକା, ରେଜାପଇସା ଯାହା ପାଇଲା, ଅଣ୍ଟାରେ ଖୋସି ଭାଟିକୁ ବାହାରିଗଲା । ମାଇପିଟା ଖଡୁ, ବାଲା ବନ୍ଧକ ଦେଇ କେତେ ଦିନ ଚଳେଇବ ? ଏ ଖଣ୍ଡପ୍ରଳୟ ବେଳାରେ କିଏ ତାକୁ ଧାନ ଚାଉଳ ଉଧାର ଦବ ?

ଅଗଣି ପଧାନକୁ ତା' ପୁଅ ପୋଷିବ ନାଇଁ ରୋକ୍‌ଠୋକ୍ ମନା କରିଦେଲା । ବୁଢ଼ାଟା ରୋଗ, ଚିନ୍ତାରେ କତରାଲାଗି ହେଇ ପଡ଼ିଚି । ପୁଅ, ବୋହୂ ଆର ଖଞ୍ଜାରେ ନିଧଡ଼କ । ପଧାନିଆଣୀ ମରିଯାଇ ନାଇଁ ଯେ ତରି ଯାଇଛି ।

ଅଜା ଏ ସବୁକଥା ବଖାଣୁଛନ୍ତି ଆଈ ପାଖରେ । ସେମାନଙ୍କୁ ଠିକଣା କରି ଆସିଲେ । କୂଳରେ ଲଗେଇଲେ । ତାଙ୍କ କଥା କିଏ ଅମାନ୍ୟ କରିବ ?

ବୋଉ ଖଦି ଖଣ୍ଡିକ ଗୁଡ଼େଇ ହେଇ, କାନି ଆଢୁଆଳ କରି ସଂଜ ସଳିତା ନେଇ ଥୋଇଲା ବାରଣ୍ଡା ଉପରେ । ଚଉରା ପାଖକୁ ଯାଇ ହଉ ନାହିଁ । ସଳିତାର ଆଲୁଅରେ ତା'ର ସେଇ ନିଟୋଳ ଶାନ୍ତ ମୁହଁଟା ନଈକୂଳର ବରବେଦୀରେ ବୃନ୍ଦାବତୀଙ୍କ ମୁହଁ ଭଳି ଦିଶିଲା କୁସୁମକୁ । କୋଡ଼ିଏ, ବାଇଶ ବର୍ଷ ବୟସରେ ଗାଁ ଗୋଟାକ ଯାକରେ ବାଗିହେଇ ପଡ଼ିବ ସେ !

ଅଜା ତାକୁ ଘଡ଼ିଏ ନିଘା କଲେ । ଆଈ ଚା' ପଥୁରିଏ, ମୁଢ଼ି କଂସାଏ ଥୋଇଲାଣି । ବୋଉକୁ ସିଧା ଚାହିଁ କହିଲେ, ''ଏଠିକି ଆ, କମଳା । ଶୁଣ୍, ତୁ କାଲି ବାହାରିଯା । ସବାରୀ, ଗୌଡ଼ ବନ୍ଦୋବସ୍ତ କରିଦଉଚି । ନିଜେ ବ୍ରଜ ବିହାରୀ ଖବର ପଠେଇଚି । ଯା, ମା । କୁସୁମ, ନାଡି ଟୋକାର ଜିନିଷ ସଜିଲ କର ।''

ବାହାରର ବତାସୀ ପବନ ବୋଉର ପତଳା ଦେହ ଥରେଇ ଦଉଥିବ। ଅଧା ଅଂଧାରରେ ତା' ମୁହଁରୁ କିଛି ବାରିହେଲା ନାଇଁ। ଘଡ଼ଘଡ଼ି, ବିଜୁଳି ବର୍ଷାର ତୋଡ଼ମାଡ଼ ବଢ଼ି ଚାଲିଥାଏ। ପାଟିରେ ଯାବ ପଡ଼ିଯାଇଥିବା ଭଳି ବୋଉ ଚୁପ୍ ରହି ସେଇଠି ଠିଆ ହୋଇ ସବୁ ଶୁଣିଲା। ଆଈ ବି ଭରସି କରି ପଦେ କହି ପାରିଲା ନାଇଁ। ଅଜାଙ୍କ କଥାରେ ମୁହଁ ଖୋଲିବା ଏ ଘରେ କୋଉଦିନ ହେଇ ନାଇଁ। ଘରର ମୁରବୀ; ଗାଁର ମୁଖିଆ। ଘରେ ବାହାରେ ସଭିଙ୍କ ପାଟି ବନ୍ଦ।

''ହଇ ହୋ, କଥାଟା ସୁନ୍ଦର ହଉନାଇଁ। ଗାଁଲୋକେ ଆମକୁ କ'ଣ ଭାବିବେ? ଝିଅ ହେଲା ପରଧନ। ଅଧିକ ଦିନ ଏଠି ରହିବାଟା କମଳାର ଅସମ୍ମାନ।''

ଏଡ଼ିକି ସାନ ଝିଅ କୁସୁମ ଆଈ କାଖରେ ବସି ସବୁ ଶୁଣୁଥାଏ। ଏଣେ ପାହାଚ ତଳର ପାଣି ଘେରକୁ ଦେଖି ଦେଖି ଗାଇଲା, ''ମୋ ନାଆରେ ନାଆ ତୁ ଭାସିଯାଆ, ଅଥଳ ଜଳେ ଭାସି ଯା। ଦରିଆ କୂଳେ ଲୁଆର ସାଥେ ନାଚି ଯା...''

ଆଈ କାଖରୁ ବୋଉ ତାକୁ ଘୋସାରି ନେଇ ଘର ଭିତରକୁ ଚାଲିଗଲା। ମଶିଣା ଖଣ୍ଡକରେ କାଂଥ ପାଖକୁ ଶୋଇଛି ତିନିମାସର ଉଡିଆଣୀ ପିଲାଟା। ଏଡ଼େ ପତଳାଟା ହେଇଥାଏ, ଚେଁ ଚେଁ କରେ, କାନ୍ଦିପାରେ ନାହିଁ ଭଲରେ।

ବୋଉ ତାକୁ କୋଳକୁ ଆଉଜେଇ ନେଲା। ଖୁଆଏ, ବିଧାଏ ଦେଲା ନାହିଁ। ଅବେଳଟାରେ ମୁଣ୍ଡ ଆଉଁସି କାନ ଥାପୁଡ଼େଇ ଶୁଆଇ ଦେବାରେ ଲାଗିଥାଏ।

ଥରେ ଥରେ ବୋଉକୁ ଚାହିଁଦେଇ ଆଖି ମିଟିମିଟି କଲା କୁସୁମ। ବୋଉର କୋଉ ଆଡ଼କୁ ନିଘା ବୁଝିପାରୁ ନଥାଏ। କାନ୍ଥକୁରାରେ ଲଣ୍ଠନ ମିଂଜି ମିଂଜି ହେଇ ଜଳୁଛି।

''ଝିଅ ଶୋଇଗଲା କି ମା'? ଦିନ ସାରା ନାଚିଲା, ସନ୍ଧ୍ୟା ବେଳଟାରେ ନ ଖାଇ ଶୋଉଚି।''

ଆଈକୁ ବୋଉ କିଛି କହିଲା ନାହିଁ। ଆଈ ପୁଣି କହିଲା, ''ତୋ ନନାଙ୍କୁ କ'ଣ କହିବି ଲୋ କମଳା? ମୋର ତ ବୁଦ୍ଧି ହଜିଗଲାଣି। ବ୍ରଜ ବିହାରୀର ତାଗିଦା। ଶୁଣୁଚି ଆଉ ଯିବ ନାଇଁ। ସେ ଚାକିରି ତା'ର ଆଉ ନାଇଁ।''

ବୋଉର ଓଠ ହଲିଲା ନାଇଁ। ଆଈ ମୁହଁକୁ ଚାହିଁ ରହିଥାଏ।

"ହେଇଟି ଲୋ ମା, ପାଞ୍ଚ ଭରିଆ ହାରଟୀ ବେକରେ ପକେଇଦେ। ଟଂକା ଦି'ହଜାରେ ନନା ସଞ୍ଜିଲ କରିଛନ୍ତି।"

ବୋଉ ସିଧା ହୋଇ ଉଠିବସିଲା। ଧୀରେ କହିଲା, "ସବୁ ତ ଦେଇଥିଲୁ। ଏଇଟା ଥାଉ ତୋ ବୋହୂକୁ ଦେବୁ।"

ଆଉ ମାନିଲା ନାହିଁ। ବୋଉ ଗଳାରେ ହାରଟି ପିନ୍ଧେଇଦେଲା।

"ବାଃ, ବାପ ଘରେ ଚେହେରା ବାଗେଇ ଫେରିଛୁ! ଦେଖେ ଦେଖେ, ହାରଟା ନୂଆ ଗଢ଼େଇଲେ?"

ବୋଉର ଦୋଷ ସେ ଘୁଞ୍ଚିଗଲା। କୁସୁମ ଡ଼ରିଯାଇ ବୋଉ ଉପରେ ହାତ ପକେଇ ତା' ପିଠିକୁ ଲାଗିଆସିଲା।

"କ'ଣ ହଉଚି? ବାପଘର ଗରବ ଦେଖଉଚୁ?"

ଲୋକଟା ରାଗିଗଲା ଏଇ ଟିକକୁ। ଆଖିଟା ଜଳୁଥାଏ।

ପାହାନ୍ତି ପହରର ନିଦ ଭାଙ୍ଗି ଆସୁଚି। ବୋଉ ଆସ୍ତେ କହିଲା, "ନା— ସେ ହାରରେ ହାତ ଦିଅନା।"

"କ'ଣ କହିଲୁ? ହାତ ଦେବିନି? ଶାଳି ଦେ— ଖୋଲି ଦେଇଦେ ଏବେ। କରଜ ଟଂକା କିଏ ସୁଝିବ? ବନ୍ଧକ ରଖି ଟଂକା ଆଣିବି।"

"ନା...ନା" ଛଡ଼ା ଛଡ଼ି ଲାଗି ରହିଲା।

ତିନିମାସର ପିଲାଟାର ଜୋର ନିଦ। ବୋଉର ଶୁଖିଲା ଥନ ଚୁଚୁମି ଶୋଇ ଯାଇଥାଏ। ମଝିରେ ମଝିରେ ଚମକି ଉଠି ହାତ ଗୋଡ଼ ହଲଉଥାଏ।

ବୋଉକୁ ପଲଙ୍କ ଉପରୁ ଘୋସାରି ନେଲା ଲୋକଟା। କୁସୁମ ଜୋର୍‌ରେ କାନ୍ଦି ପକେଇଲା। ଲୋକଟା ତାକୁ ଶୂନ୍ୟେ ଶୂନ୍ୟେ ଟେକିନେଇ ଅମ୍ବିକାକୁ କଂସ ପଥରରେ କଚି ଦେବା ଭଳି ବାହାରର ବାଲିଗଦାକୁ ଫୋପାଡ଼ି ଦେଲା।

ଏଡ଼ିକି ଟିକିଏ ଝିଅ କୁସୁମ। ଭୟ ଆତଙ୍କରେ ଚେତା ବୁଡ଼ିଗଲା ତା'ର।

'ମୋ ଝିଅ, ମୋ ଝିଅ' କହି ବୋଉ ଧାଇଁ ଆସୁଥିଲା। ଲୋକଟା ତା' ବେକରୁ ଅଧା ଖୋଲା ହାରଟା ଟାଣି ନେଇ କୁଆଡ଼େ ବାହାରିଗଲା।

କେତେବେଳକୁ ସେ ଆଖି ଖୋଲେ ତ ବୋଉ ତାକୁ କୋଳରେ ଧରି ବସିଚି। ସେ ପାଖରେ କୁନି ପୁଅଟା ଉଠି କାନ୍ଦୁଥାଏ।

''ଅଲକ୍ଷଣୀ ! ବଧିରା ହେଲୁଣି କି ? ଉଡିଆଣୀ ଛୁଆଟାର ତଣ୍ଟି ଶୁଖି ଯାଉଚି ଜାଣିପାରୁନୁ ?'' ବୁଢ଼ୀଟା ପାଟି କରୁଥାଏ ।

ବୋଉ ତମ ତମ ହେଇ ହାଣ୍ଡିଶାଳକୁ ଉଠି ଯାଇ ସାନ ବେଲାରେ ଉଷୁମ କ୍ଷୀର ଆଣି କାଇଲା ଝିଅଟାକୁ ପେଇ ବସିଲା ।

ଦୁଲ୍‌ଦାଲ୍, ବିଧା, ଗୋଇଠା ପିଠିରେ ବସୁଥାଏ । କିଛିକୁ ଖାତିର ନ କରି ଝିଅକୁ କୋଳରେ ବସେଇ କ୍ଷୀର ପିଆଇବାରେ ମନ ଦେଲା ।

କେତେଟା ଦିନରେ ସେ ଚେହେରା କ'ଣ ହେଲା ? ବୁଢ଼ୀଟା ଗର୍ଜି ଗର୍ଜି ନିଜେ ଖାଇ ବସେ । ବୋଉ ଅବେଳରେ ଘରଟା ଯାକର ପାଇଟି ସାରି ହାଣ୍ଡି, କୁଣ୍ଡେଇ ପୋଛି ଖାଲି ଥାଳି ଧରି ଖାଇବାକୁ ବସେ । ପେଟ ପୂରେନି । ଢ଼କ ଢ଼କ କରି ପାଣି ପେଟେ ପିଇ ପୁଅକୁ ଖୋଇ ବସେ ।

ସେଦିନ ପିଲାଟାର କ'ଣ ହେଲା ? ବୋଉ ନେହୁରା ହେଉଥାଏ ଡ଼ାକ୍ତରଖାନାକୁ ଟିକେ ନେଇ ଯିବାକୁ । ଲୋକଟା ହଲିଲା ନାହିଁ । ପିଲାକୁ ଆଡ଼ ଆଖିରେ ଚାହିଁଲା ନାହିଁ ।

ବୁଢ଼ୀ ପାଟି କରୁଥାଏ, ''ବୋପାକୁ କହୁନୁ ବଇଦ ପଠେଇ ଦବ । ପୁଅଟା ମୋର ବାହାରୁ ଆସି ଘଡ଼ିଏ ଥକା ନ ମାରୁଣୁ ତା' ଜୀବନ ଖାଉଚୁ ?''

ଲୋକଟା ମୁହଁ ବୁଲେଇ ଶୋଇଲା ।

ଛୁଆଟା ପେଟରେ ପଙ୍କମାଟି ବୋଳିବା, ପାଣି ଭାଙ୍ଗିବା, ମହୁ, ଗରମ କ୍ଷୀର ଖୋଇବା, କୋଉଥିରେ କିଛି କାମକୁ ପାଇଲା ନାହିଁ । ଗେଣ୍ଡା ପରି ଫୁଲିଥାଏ ତା' ପେଟ । ଶେଷକୁ ସାତ ରାତି କାନ୍ଦି କାନ୍ଦି ସେ ଆଖି ବୁଜିଲା ।

ଲୋକଟା ଶୋଇ ନ ପାରି ଉଠି ମଝିରେ ମଝିରେ ପାଟିଟାଏ କରେ । ଏବେ ଚୁପ୍ ପଡ଼ିଲା ।

ରାତି ଅଧରେ ବିକଳ ସ୍ୱରରେ କାନ୍ଦି ଉଠିଲା ବୋଉ ।

ଲୋକଟା ଧଡ଼ପଡ଼ ହେଇ ବିଛଣାରୁ ଉଠି ପାଟିଟାଏ କଲା, ''ବୋଉଲୋ, ଛୁଆଟା ଚାଲିଗଲା ।''

''ଏ ସବୁ ସରିଗଲାରେ, ବରଇ । ଶେଷକୁ ଏଇୟା କଲା ଅଲକ୍ଷଣୀ, ଡ଼ାକୁଣୀ ।'' ବୁଢ଼ୀ ବାହୁନି ବସିଲା ।

କି ଶୋଚନା କରୁଥାଏ କେଜାଣି ? ବୋଉର ସେ ଗୋରା ଦେହଟା କଳା

ପଡ଼ିଗଲାଣି। ପଖାଳ କଂସାରେ ଲୁହ ତୋରାଣି ଏକାଠି ହୁଏ। ଖାଇବା ପାଖରୁ ଉଠିଯାଇ ଗୋରୁହାଣ୍ଡିରେ ଅଜାଡ଼ି ଦିଏ।

ବୁଢ଼ୀ ଧାଇଁ ଆସି ଖୁନ୍ଦାଏ, ଗୋଇଠାଏ ଦେଇ ପାଟି କରେ, ''ଆଲୋ, ଦାନା ମିଳିବ ନାଇଁଲୋ ଲକ୍ଷ୍ମୀଛାଡ଼ି।''

ରାତି ଅଧରେ ଲୋକଟା ବୋଉକୁ ହଲେଇ ହଲେଇ ଉଠେଇଲା।

''କମଳା, ତୁରନ୍ତ ଚାବିଟା ଦେଲୁ।''

''କାହିଁକି? ଆଉ କିଛି ନାହିଁ ମୋ ପାଖରେ।''

''ଟଂକା କେତଟା ପେଇଁ ଆଉଥରେ ମହାଜନ ପାଖରେ ହାତ ପତେଇବି? ଉଠ୍ ଚିଠି ଲେଖ୍ ତୋ ନନାଙ୍କୁ।''

ବୋଉ ଡ୍‌ବ ଡ୍‌ବ କରି ଚାହିଁଲା।

''ଶୁଣିପାରୁନୁ କ'ଣ କହିଲି?''

''ହଁ, ନିଶାପାଣି ବନ୍ଦ କରିଦିଅ।''

''ଶାଳି, ମତେ ଉପଦେଶ ଦଉଚୁ? ବାହାର– ଏ ଘରୁ। ଟାଣ ଦେଖଉଚୁ ମତେ?'' ଲୋକଟାର ଆଖି ଗଡ଼ ନିଆଁ ଭଳି ଜଳୁଥାଏ। ବୋଉ କଥା ବଢ଼େଇଲା ନାଇଁ।

ରାତି ଅଧରେ ବୋଉକୁ ଟଣା, ଘୋସରା, ବାଡ଼ିଆପିଟା ସବୁଦିନର ଦିହ ଶୁଆ ହେଇ ଯାଇଥାଏ ତା'ର। ସକାଳୁ ବୁଢ଼ୀର ତୋଡ଼ମାଡ଼, ଗର୍ଜନ। ସେ ବିଛଣାକୁ ଯିବାଯାଏ ଗର ଗର ହଉଥାଏ।

ଥକ୍କା ମାରି ବସିଚି ବୋଉ। ଅନ୍ତର ହାହାକାର କରୁଚି। ଶୂନ୍ୟ କୋଳ। କ୍ଷଣକୁ କ୍ଷଣ ଆଖିରେ ପାଣି ଭରି ଯାଉଚି। ଏତିକିବେଳେ ଲୋକଟା ବୁଝେଇବ କ'ଣ ଆହୁରି ତୋଡ଼ମାଡ଼।

''ଭାତ ଉତୁରି ଚୁଲିରେ ପଶୁଚି। ଚୁଲି ଲିଭିଲାଣି ତେଣିକି ଲକ୍ଷ୍ମୀଛାଡ଼ିର ନିଘା ନାଇଁ।''

ବୁଢ଼ୀ ପାଟି ଶୁଣି ବୋଉ ଉଠି ଯାଉଥିଲା, ସେ ପାଖରୁ ଲୋକଟା ଧାଇଁ ଆସିଲା। ''ଚାବିଟା ଦଉଚୁ ନା ଦେଖିବୁ?'' ଚୁଲିରୁ ଜଳନ୍ତା କାଠ ଧରି ଗୋଡ଼େଇଲା ଲୋକଟା।

''ତାକୁ ଟେକେ ନ ଦେଲେ ହବ ନାଇଁ। ଖୁମାଣି କାଢୁଚି।''

ବୁଢ଼ୀ ଚିହାଉଥାଏ । ବୋଉ କାହାକୁ କିଛି ନ କହି ଉଠିଯାଇ ଚୁଲି ଫୁଙ୍କିଲା, ଧୂଆଁରେ ଆଖି ପୋଡୁଚି ।

କୁସୁମ ବହି ସିଲଟ ଧରି ବାରଣ୍ଡାରେ ବସିଚି । ସ୍କୁଲରୁ ଆସିଥାଏ । ବୋଉ ତା' ଖାଇବା କଥା ବୁଝିବ କ'ଣ ? ମା' ପୁଅ ଦିହେଁ ତ ତାକୁ ଟଣା ଓଟରା କରୁଛନ୍ତି ।

"ଶାଳି, ଖାନିକୀ, କଥା ଶୁଭୁ ନାଇଁ ? ଦେ କହୁଚି ଚାବିଟା । ଦିବୁ ନା ଦେଖିବୁ ? ରହିଥା, ଆଜି ତୋର ଦିନେକୁ ମୋର ଦିନେ ।"

ବୋଉ ତା' ହାତ ପାପୁଲିରେ ଜଳନ୍ତା କାଠଟା ଧରି ପକେଇଲା । ତା' ନକରିଥିଲେ ତ ସେଇଠି ଜଳି ପୋଡ଼ି ମରିଯାଇଥାଆନ୍ତା ।

ଲୋକଟା ପେଲି ଦେଲା ତାକୁ । ବୋଉର ମୁଣ୍ଡ ପିଟି ହେଇଗଲା ଶିଳରେ । ଓଳି ତଳଟାରେ ପିଣ୍ଡାରୁ ଗଡ଼ି ପଡ଼ିଲା ସେ । 'ମରିଗଲିଲୋ' କହୁ କହୁ ତା' ଚେତା ବୁଡ଼ିଗଲା ।

କୁସୁମ ଥରି ଥରି କାନ୍ଦି ଉଠିଲା ।

ରାତି ଅଧ ସରିକି ବଳଦ ଗାଡ଼ିରେ ମଡ଼ା ବୁହା ହେଲା ଭଳି ବୋଉର ଅସାଡ଼ ଦେହଟା ମାମୁ ଧରି ଆସିଲା । ସାଙ୍ଗରେ କୁସୁମ । ସାନ ଝିଅଟା ସବୁ ଯନ୍ତ୍ରଣାର ଅସହାୟ ସାକ୍ଷୀ ।

ଡ଼ାହାଣ ହାତ ପାପୁଲିରେ ପୋଡ଼ା ଘା । ଦେହ, ହାତ ଖଣ୍ଡିଆ ଖାବରା । ମୁଣ୍ଡ ଫାଟି ରକ୍ତ ସ୍ନାହାନ । ଦୁଇଦିନ କାଳ ଚେତା ନାହିଁ ।

ଅଜାଙ୍କର ସେଇଭଳି ସ୍ୱଚ୍ଛ ସୁନ୍ଦର କଥା ବାହାରିଆ ଲୋକଙ୍କ ସଙ୍ଗେ । ଡ଼ାକ୍ତରଙ୍କୁ କହିଲେ, "କମଳା ପାଣି ଧରି ଆସୁଥିଲା । ଗୋଡ଼ ଖସିଗଲା । ମୁଣ୍ଡଟା ପିଟି ହେଇଗଲା ପଥରରେ ।"

ପାଗଳୀଟାଏ, ବସିଚି ତ ବସିଚି ? କେତେବେଳେ ହସୁଚି ତ କାନ୍ଦୁଚି । ମନକୁ ମନ କଥା କହୁଚି । ସ୍ୱର ଲୟେଇ 'ଧୋ ବାଇୟା' ଗାଇ ପିଲା ଶୋଇପକେଇବା ଖେଳ ଖେଳୁଛି ।

ଏଡ଼ିକି ସାନଝିଅ କୁସୁମ, ତାକୁ ଆଉ ପାଗିଳୀ ପାଖକୁ ଛାଡ଼େନାହିଁ ।

କୁସୁମକୁ ଗୋଧୋଇ, ଖୁଆଇ ଜାମା ପିନ୍ଧେଇ ସ୍କୁଲ ପଠାଏ । ତା'ପରେ ପାଗିଳୀର ସେବା ଯତ୍ନ ।

ଆହା ଆଈ! ସାରା ଜୀବନ ଏଇ କାମ ଶେଷକୁ ବୁଢ଼ୀ ବୟସରେ ଖଟି ଖଟି ମରୁଚି।

ମାଈଁ ଆସିବା ପରେ ବ୍ୟସ୍ତ ହେଇ ପଡ଼ନ୍ତି, ''କମଳାଙ୍କୁ ତାଙ୍କ ଶାଶୁଘରକୁ ପଠେଇ ଦିଅ। ମୁଁ ଏ ପାଗଳାଖାନାରେ ରହିପାରିବିନି।''

କଥା ନ ବଢ଼େଇ, ଭଲରେ ଭଲରେ ଅଜା ମାଈଁକୁ ନେଇ ନିଜେ ମାମୁଙ୍କ ଚାକିରି ଜାଗାରେ ଛାଡ଼ି ଆସିଲେ।

ସମୟ କ'ଣ କାହାକୁ ଚାହିଁ ବସିଚି? କୁସୁମ ସ୍କୁଲ ପାଠ ସବୁ ଶେଷ କରି ପାଖ କଲେଜରେ ଦି'ବର୍ଷ ପଢ଼ି ବାହା ହେଇଗଲା।

କଲେଜରେ ଚାକିରି କଲା ଦିନୁ ଶ୍ରୀକାନ୍ତକୁ ଅଜା ନାତୁଣୀଜ୍ୱାଇଁ କରିବାକୁ ମନେ ମନେ ସ୍ଥିର କରି ବରଘର ଦେଖି ଆସିଲେ।

ମା, ପୁଅ ଦୁଇଜଣ। ନିଙ୍ଗଙ୍ଗାଳି ଘର। ବିଶ୍ୱମ୍ବର ରଥ ନିଜେ ପ୍ରସ୍ତାବ ଧରି ଆସିଥିଲେ। ଏମାନେ ଅରାଜି ହେଲେ ନାହିଁ।

ବୋଉ କିଛି ବୁଝିଲା ନାଇଁ, ଜାଣିଲା ନାଇଁ। ଝିଅ, ଜ୍ୱାଇଁଙ୍କ ଦୋଳ ମୁକୁଟ ଦେଖିଲା ନାଇଁ। କାନ୍ଦି କାନ୍ଦି ଆଈ ସବୁ କାମ ତୁଲେଇଲା। କୁସୁମକୁ ଶାଶୁଘରକୁ ବିଦାକଲା।

ଅଜା ନିଶ୍ଚିନ୍ତରେ ବସି ବରଯାତ୍ରୀମାନଙ୍କ ସହ ଆଳାପ କରୁଥାଆନ୍ତି। କିଏ ପଚାରିଲେ କହନ୍ତି, ''ଆମର କ'ଣ ଆଉ କ୍ଷମତା ଅଛି? ସୁପାତ୍ରଟି ଦେଖି ରତ୍ନଟିକୁ ତା' ହାତରେ ଦେଲୁ।'' ବେଦୀ ଉପରେ ବସି ଅଜାଙ୍କ କଥା ଶୁଣିଲା କୁସୁମ। ସେତେବେଳେ ମନ ତା'ର ଅନ୍ୟ ପ୍ରକାରର। ମାମୁ, ମାଈଁ କନ୍ୟା ଦାନ କଲେ।

ବିଦା ହେଇଯିବା ଆଗରୁ ଅଜା ତାକୁ ଡ଼ାକିନେଲେ ବାଡ଼ି ପାଖକୁ। ନାତୁଣୀ ସେଇ, ଝିଅ ସେଇ। ଆଖି ପୋଛି କହିଲେ, ''ମା' କୁସୁମ, ତୋର ଠାକୁର ସାହା। ସବୁ ଆଡ଼କୁ ଜଗି ଚଳିବୁ। ନିଜକୁ ନିଜେ ରକ୍ଷା କରିବୁ ମା'।''

ଅଜା ପୁଣି ଏମିତି ଛାତିରେ ହାତ ରଖି କାନ୍ଦି ପାରନ୍ତି? କୁସୁମ ତାଙ୍କୁ ବିସ୍ମୟରେ ଲୁହଭରା ଆଖିରେ ଚାହିଁ ରହି ଥିଲା।

ଅଜାଙ୍କ ସମ୍ମାନ, ତାଙ୍କର ଉପଦେଶ କୁସୁମ ଭୁଲି ନାହିଁ। ତା' ଶାଶୁ ତ ସେଇଭଳି ଲୋକ। ଯାହା କଲେ, ଯେତେ ଦେଲେ ନେଲେ ଖୁସି ନୁହଁ।

ସବୁବେଳେ ଅସନ୍ତୁଷ୍ଟ। କଥା କଥାକେ ଯୌତୁକ ଖୁଣ୍ଟା।

ପୁଅର କଲେଜ ଚାକିରି। କେତେ ଯାନି ଯୌତୁକ ନେଇ ବୋହୂ ଆସିଥାଆନ୍ତା— ଏଇ ଅବଶୋଷ ତାଙ୍କୁ ଘାଣ୍ଟୁଥିଲା। ସେ ଝୁରି ହଉଥିଲେ ସେଇ ଗୋଟିଏ କଥା। କୁସୁମ ତାଙ୍କଠୁଁ ମାଡ଼ ଗାଳି ଖାଇ ନିଜେ ନିଜେ ହଜମ କରି ଦେଉଥିଲା। ଦ୍ୱିତୀୟ ଲୋକକୁ ଜାଣିବାକୁ ଦେଉ ନଥିଲା।

ତଥାପି ଶ୍ରୀକାନ୍ତ କ'ଣ ବୁଝୁ ନଥିଲେ? ତାଙ୍କ ବୋଉକୁ ବୁଝେଇ ବୁଝେଇ ସେ ଥକିଯାଆନ୍ତି।

"ଯାହା କହିବୁ ଟଂକା, ସୁନା ଆଣିଦେବି ଲୋ ବୋଉ। ତୁ ଟିକିଏ ଖୁସୀ ହୁଅନ୍ତୁ ନାହିଁ?"

ଶାଶୁ ଗର ଗର ହେଇ ବାଡ଼ିପଟକୁ ପଳାନ୍ତି। ତାଙ୍କ କପାଳକୁ ସେଦିନ ଡ଼ାଲି, ତରକାରୀ, ଶାଗ ଭଜା, ସବୁ ଲୁଣି, ଅଲଣା! ଶାଶୁଙ୍କ ମୁଣ୍ଡ ଖରାପ ହେଇଗଲା।

ବୋହୂଟା ଯେ ଜରରୁ ଉଠି କଷ୍ଟରେ କାମ କରୁଚି ତା' ଭାବି ପାରିଲେ ନାହିଁ।

ଅଇଁଠା ଥାଳିକୁ ଦୁଆରକୁ ଫୋପାଡ଼ିଦେଇ ଧାଇଁ ଗଲେ ହାଣ୍ଡିଶାଳକୁ। ଚୁଲିରେ ପାଣି ବସିଥାଏ ଡେକ୍‌ଚିରେ। ଅଦା ଚା' ଟିକେ ଖାଇବାକୁ ମନ ଥିଲା କୁସୁମର। ଜାଳ ଖଣ୍ଡେ ପଡ଼ିଥାଏ ଚୁଲି ଭିତରେ।

ସେଇ ଜଳନ୍ତା କାଠ ଖଣ୍ଡିକ ଧରି ଉଗ୍ର ରଣଚଣ୍ଡୀ ମୂର୍ତ୍ତି ଧାରଣ କରି ଧାଇଁ ଆସିଲେ ସେ କୁସୁମ ପାଖକୁ। ପଟି ଖଣ୍ଡିଏ ପକେଇ ଶୀତ ଦିନର ଅଧା ଖରା ଛାଇରେ ବସିଥାଏ କୁସୁମ। ହଠାତ୍ ଉଠିପଡ଼ି ଶାଶୁଙ୍କର ସେଇ ହାତଟାକୁ ଜୋରରେ ଧରି ନ ପକେଇଥିଲେ କ'ଣ ହେଇଥାଆନ୍ତା ତା'ର ଅବସ୍ଥା!

ଦାଣ୍ଡ ଘରେ ପଶୁ ପଶୁ ଏ ଦୃଶ୍ୟ ଦେଖି ଚିତ୍କାର କରି ଉଠିଲେ ଶ୍ରୀକାନ୍ତ, "ନା ଆଉ ଦଣ୍ଡେ ନୁହଁ। ଚାଲିଆସ, କୁସୁମ। ସେ ଏକା ପଡ଼ିଥାଉ। ତା' ମୁହଁରେ ନିଆଁ ଦବାକୁ ବି ମୁଁ ଆସିବିନି ଏଠିକି। ଆଜିଠୁଁ ତା' ପୁଅ ମରିଯାଇଚି।"

କୁସୁମ ଶ୍ରୀକାନ୍ତଙ୍କ ପାଟିରେ ହାତ ଦେଲା, "ନା— ଏମିତି କୁହ ନାହିଁ। ମତେ ଅଧିକ କଷ୍ଟ ହଉଚି। ଏ ବଅସରେ ତାଙ୍କୁ ଏକା ଛାଡ଼ି ଦେଇ କୁଆଡ଼େ ଯିବ?" କୁସୁମ ଥରି ଥରି ବିଛଣାରେ ବସି ପଡ଼ିଲା।

"ତୁମର ଅଝଟ ପାଗିଳୀ ଝିଅଟାଏ ଥିଲେ କ'ଣ କରନ୍ତ? ଏକା ଛାଡ଼ି ଦେଇ ପଳେଇ ଯାଇ ପାରନ୍ତ?"

ଶ୍ରୀକାନ୍ତ ବିସ୍ମୟରେ ଚାହିଁ ରହିଲେ କୁସୁମକୁ।

କୁସୁମ ପ୍ରକୃତିସ୍ଥ ହେଲା। କୋଉଠି କ'ଣ ହଜେଇ ଦବା ଭଳି ମନଟା ସକାଳ ପହରୁ ଘାଣ୍ଟି ହଉଛି, ଅଜାଙ୍କ ପାଖରୁ ଖବର ପାଇ ଏ ପାଗରେ ରିକ୍ସା ଖଣ୍ଡେ କରି ଦୁଇବର୍ଷର ଝିଅକୁ ଧରି ସେ ଆସିଚି। ଘରକୁ ନ ଯାଇ କଲେଜରୁ ସାଇକେଲ ଧରି ତିନ୍ତିବୁଡ଼ି ଆସି ପହଞ୍ଚିଛନ୍ତି ଶ୍ରୀକାନ୍ତ।

ବୋଉ ଆଖି ଖୋଲୁ ନାହିଁ, କାହାକୁ ଦେଖୁ ନାହିଁ। ନିଶ୍ୱାସ ଯାହା ଚାଲୁଚି। କେତେବେଳକେ ଡ଼କାଡ଼କି କଲେ ହୁଁ, ହାଁ କରି ଥରେ ଚାହିଁ ଦେଇ କାହାକୁ ଖୋଜି ହେଲା ଭଳି ଚାହୁଁଚି।

ଏ ଖେଳ ସକାଳ ପହରୁ ଚାଲିଛି। ଜୀବନ ମରଣ ଖେଳର ଶେଷ ବାଜି! ସେ ହାର୍‌ଜିତ୍‌ରେ କ'ଣ ମିଳିବ ବୋଉକୁ?

ଡ଼ାକ୍ତର ଦେଖି ଗଲାଣି ଦୁଇଥର ଆସି। ସେମାନେ ସର୍ବିଏ ପାଣି, ହରଲିକ୍ସ ଚାମଚେ ଚାମଚେ ପାଟିରେ ଦେଇ ଜଗି ବସିଥିଲେ। ଝିଅଟା ଅଝଟ ହେବାରୁ ଦାଣ୍ଡପଟ ବାରଣ୍ଡାକୁ ଚାଲିଆସିଥିଲା କୁସୁମ। ଲଗାଣ ବର୍ଷାଟା ଦାଉ ସାଧୁଚି ଏ ବେଳରେ!

କିଏ ସେଠି ବାଡ଼ ପାଖରେ? ବୁଢ଼ାଟା ଲମ୍ୱା ଦାଢ଼ୀ ବଢ଼େଇଚି। କୁସୁମ ଦୋ ଦୋ ଚିହ୍ନା ହଉଚି। ଲାଲ୍ ଲାଲ୍ ବଡ଼ ବଡ଼ ଆଖି। ତା' ଝିଅଟା ଚାହିଁ ରହିଛି ଲୋକଟାକୁ।

"ବାଇଆ ଆସିଚି, ବାଇଆ ଆସିଚି।"

ଝିଅ ଧାଇଁ ଆସିଲା କୁସୁମ ପାଖକୁ। ଲୋକଟା କେମିତି କେଜାଣି? ତାକୁ ତା' ଝିଅକୁ ଏକ ଲୟରେ ଚାହିଁ ରହିଛି। ଛତା ଖଣ୍ଡିଏ ଧରିଥିଲେ ବି ପୂରା ଭିଜି ସାରିଲାଣି।

କୁସୁମ କିଛି ଚିନ୍ତା କରିବା ପୂର୍ବରୁ ଅଜା ବାହାରି ଆସିଲେ ଘର ଭିତରୁ। ସେଇ ପିଣ୍ଡାଟାରେ ଠିଆହେଇ ଧୀର ଶାନ୍ତ ସ୍ୱରରେ କହିଲେ, "ଖୁବ୍ ଡ଼େରିକଲ ବ୍ରଜବିହାରୀ, ସେ ତୁମକୁ ଅପେକ୍ଷା କରିଛି। ସମୟ ପାଖେଇ ଆସିଲାଣି।"

ଓହୋ ଏଇ ଲୋକଟାକୁ ବୋଉର ପବିତ୍ର ଆତ୍ମା ଅପେକ୍ଷା କରିଚି ତଥାପି। ଲୋକଟା ତେବେ ବଂଚିଚି।

କୌଣସି ଦିନ 'ବାପା' ଉଚ୍ଚାରଣ କରିନାହିଁ କୁସୁମ। ଏବେ ବି ଲୋକଟାକୁ ଚାହିଁ ପାରୁ ନାହିଁ ସେ।

ଶ୍ରୀକାନ୍ତ ଧାଇଁ ଆସି କୁସୁମର ହାତ ଟାଣିନେଲେ, ''ସରିଆସିଲାଣି ସବୁ... ପାଣି ଟିକେ ଦିଅ।''

ନିଜକୁ ସଂଭାଳି ନ ପାରି ବୋଉ ପାଦରେ ମୁଣ୍ଡ କଚାଡ଼ିଲା କୁସୁମ। ଦୀର୍ଘ ଦିନର ସଂଚିତ ଲୁହ କଣ୍ଠ ଥରାଇ ବାହାରି ଆସିଲା।

''କମଳା ବ୍ରଜକୁ ଆଖି ଖୋଲି ଚାହିଁଲା। ତାକୁ କ୍ଷମା କରିଦେଲା ଯିବା ବେଳେ।'' ଅଜା ଆଈଙ୍କୁ କହୁଥିଲେ।

ବୋଉକୁ ଗାଧୋଇ ଦେଇ କିଏ ନୂଆ ଶାଢ଼ି ପିନ୍ଧେଇ ଦେଲେଣି। ସୁନ୍ଥାରେ ସିନ୍ଦୂର, ହାତରେ ନୂଆଶଂଖା, କପାଳରେ ସିନ୍ଦୂରଟୋପା, ପାଦରେ ଅଳତା। ବୋଉର ଚେହେରା ଉଜ୍ଜଳ ଦିଶୁଚି। ପୂର୍ବଦିନର ରୂପରଂଗ ଫେରି ଆସିଲାଣି।

ପବନର ଗତି ପ୍ରଖର ହଉଚି। ଝଡ଼ି ବର୍ଷା ସ୍ୱର ତୋଳିଛି। ଅହିଆ ଡ଼େଙ୍ଗୁରା ବାଜୁଛି। ବାଆ, ବତାସ, ତୁହାକୁ ତୁହା ଅସରା ଅସରା ବର୍ଷାକୁ ଆଡ଼େଇ ଦେଇ ମାଇଭାଇମାନେ ଆଗେଇ ଚାଲିଛନ୍ତି। ଲୋକଟା କାଂଧରେ ନିଶ୍ଚିନ୍ତ ନିଦରେ ଶୋଇଚି ବୋଉ। ସତେକି ଏତିକି ପାଇଁ ଜୀବନସାରା ଅପେକ୍ଷା କରିଥିଲା ସେ। ଖଇ କଉଡ଼ି ବିଂଚି ବିଂଚି ଚାଲିଛି ଲୋକଟା।

ଘଡ଼ଘଡ଼ି ଶବ୍ଦରେ ଚମକିପଡ଼ି କୁସୁମକୁ କୁଣ୍ଢେଇଧରିଛି ତା'ର ଦୁଇବର୍ଷର ଝିଅ।

''ବୋଉ, ବୋଉଲୋ, ତୁ କାହିଁକି କାନ୍ଦୁଚୁ ?''

ଆଖି ପୋଛି ଝିଅକୁ କୋଳେଇ ନେଇ ଛାତିରେ ଜଡ଼େଇ ଧରିଲା କୁସୁମ। ତା'ପରେ କ'ଣ ଖୋଜି ହେବା ଭଳି ଝିଅଟିର କଅଁଳ ମୁହଁକୁ ଚାହିଁ ରହିଲା ସେ ଅନେକ ସମୟ।

□ □

# କଟେଜ୍

''ଲିଜା, କ'ଣ ଏତେ ଦେଖୁଚ ? ଏଠିକି ଆସ ।'' ଏଲିଜା ଝରକା ପାଖରୁ ଫେରିଆସିଲା । ତାପସ ଚା' କରୁଛି । ପାଖାପାଖି ଦୁଇଟି ଚେୟାର୍, ଛୋଟ ଟି'ପୟରେ ସକାଳର ଜଳଖିଆ ସରଞ୍ଜାମ ଅନେକବେଳୁ ଏଲିଜା ସଜେଇ ରଖିଛି । ତାପସ ସକାଳବୁଲା ଶେଷ କରି ଫେରି ଆସିଛି ।

''ତୁମେ ଆଜି ଆସିଥିଲେ ଖୁବ୍ ଭଲ ହେଇଥାଆନ୍ତା !''

''ଶୋଇଗଲି,'' ଟୋଷ୍ଟରେ ଚିକ୍‌ସ୍ପ୍ରେଡ୍ ଲଗାଉଥିଲା ଏଲିଜା । ତାପସକୁ ସଂକ୍ଷିପ୍ତ ଉତ୍ତର ଦେଇ ପ୍ଲେଟ୍ ବଢ଼ାଇଲା ।

''ଆଜି ପ୍ରୋଗ୍ରାମ୍ କ'ଣ କୁହ ।''

''ତୁମେ କୁହ । ମୁଁ ଚିନ୍ତା କରିନି ।'' ଧୀରେ କହିଲା ଏଲିଜା ।

ଗ୍ରିଣ୍ଡେଲ୍‌ୱାଲଡ୍ ସୁଉଚ୍ଚ ବରଫାବୃତ ପର୍ବତ ଶିଖରରେ ସକାଳର ଖରା । ଛୋଟ କ୍ୟାଂପିଂଗ୍ରାଉଣ୍ଡରେ ତଥାପି କେହି କେହି ଶୋଇ ରହିଛନ୍ତି । ପାଖ ଟେଣ୍ଟ୍‌ରୁ ନିଦରୁ ଉଠିଆସି ସାନ ସାନ ପିଲା କେତୋଟି ବାହାର ଫୋଲ୍‌ଡିଂ ଟେବୁଲ ପାଖରେ ବସି ଖାଇବା ଆରମ୍ଭ କରିଦେଲେଣି ।

ସେମାନଙ୍କ ପ୍ରତି ଦୃଷ୍ଟି ପ୍ରସାରିତ ହେବା ପରେ ତାପସ ଆଗ୍ରହୀ ହୋଇଉଠିଛି ।

''ଏମାନେ ଇଂଲଣ୍ଡରୁ ଆସିଛନ୍ତି । ଦେଖୁନ, ଗାଡ଼ିଟା ଗ୍ରେଟ୍‌ବ୍ରିଟେନ୍‌ର ।''

''ପିଲା ଦୁଇଟି ଖୁବ୍ ସୁନ୍ଦର । କାଲିଠୁଁ ଦେଖୁଛି । ଦୁଷ୍ଟାମୀ ଆଦୌ ନାହିଁ । ଚୁପ୍‌ଚାପ୍ ଗାଡ଼ି, ବଲ୍, କମ୍ପ୍ୟୁଟର୍ ଗେମ୍ ଧରି ସେଇ ଗଛ ତଳେ ଖେଳୁଛନ୍ତି ।''

ତାପସ ଆଗ୍ରହରେ ଶୁଣିସାରି ଗମ୍ଭୀର ହୋଇ କହିଲା, ''ନା, ସେ ଢଂଢାଳ ଏବେ ନୁହଁ। ଅବଶ୍ୟ ତୁମେ ଯଦି ଚାହୁଁଚ...।''

ଏଲିଜା ହସୁଛି। ସକାଳର ସଜ ମଲ୍ଲୀଫୁଲ ମୁଠାଏ ବିଞ୍ଚି ହୋଇ ପଡୁଛି। ତାପସକୁ ମୁଗ୍ଧ ଦୃଷ୍ଟିରେ ଚାହିଁଛି ସେ।

ଛୋଟ କାରାଭାନ୍ ହାଉସ୍‌ଟି ସୁସଜ୍ଜିତ ସେମାନଙ୍କ ପାଇଁ। ସାମନା ଲନ୍ ପାଖରେ କେତେ ଫୁଲ, ଅଳ୍ପ ଦୂରରେ କାର୍ ରଖିବାର ଯାଗା। ସାତଦିନ ପାଇଁ ଏହି କ୍ଷୁଦ୍ର କଣ୍ଢେଇଘର, ସବୁଜ ବଗିଚା, ବହୁ ରଙ୍ଗର ଫୁଲ ସବୁ ସେମାନଙ୍କର। ଲ୍ୟାଣ୍ଡଲେଡି ସଜେଇ ଦେଇଛନ୍ତି।

''ଏହି କେତେଦିନ ସୁଖରେ ବିତାଇ ଦିଅ। ଇଚ୍ଛାକଲେ ମୋ ପାଖରେ ଆସି ବ୍ରେକ୍‌ଫାଷ୍ଟ, ଡିନର୍ ଖାଇପାର। ମୁଁ ଭଲ ବ୍ରେଡ୍ ତିଆରି କରିଛି। ଆଉ ଯାହା ଚାହିଁବ– ଚିକେନ୍‌ନଗେଟ୍, ଫିସ୍‌ଷ୍ଟିକ୍, ହଟ୍‌-ଡଗ୍ ସବୁ ଯୋଗେଇ ଦେବି। ଏନ୍‌ଜୟ ଇୟୋରସେଲ୍‌ଫ।''

ଅଧା ଫ୍ରେଞ୍ଚ, ଅଧା ଇଂରାଜୀରେ ହସି ହସି କହିଥିଲେ ସେ ଆସିବା ଦିନ। ତା'ପରେ କେବେ ସେ ଥରକ ପାଇଁ ଆସି ନାହାନ୍ତି। ଆବଶ୍ୟକ ହୋଇ ନାହିଁ। ସେମାନଙ୍କୁ ଏକାନ୍ତରେ ନିଜ ପୃଥିବୀରେ ଚଳିବାକୁ ଛାଡିଦେଇଛନ୍ତି। ୟୁରୋପିଆନ୍ ଭଦ୍ରମହିଳା ଜଣକ ବେଶ୍ ମାର୍ଜିତ ରୁଚିର।

କାହାର ସୁବିଧା ଅସୁବିଧା ମୁହଁରେ ନ ପଚାରି ଖଣ୍ଡିଏ ସାଇକେଲ୍‌ରେ ବୁଲିଆସନ୍ତି ସେ, କାହାରି କିଛି ସମସ୍ୟା ଥାଉ ବା ନଥାଉ। ଏହି କର୍ତ୍ତବ୍ୟରେ ସେ ଅବହେଳା କରନ୍ତି ନାହିଁ।

ସମସ୍ୟା ? ସେ ଶବ୍ଦ ଏପର୍ଯ୍ୟନ୍ତ ସ୍ପର୍ଶ କରି ନଥିଲା ଏଲିଜାକୁ।

ତାପସ ସହ ବିବାହର ମାତ୍ର କେତୋଟି ଦିନ ପରେ ସେମାନେ ଆସିଛନ୍ତି ସୁଇଜରଲ୍ୟାଣ୍ଡ। ବିବାହର ତିନିମାସ ପୂର୍ବରୁ ସିଦ୍ଧାନ୍ତଶେଖର ସାତଦିନ ପାଇଁ ବୁକିଂ କରାଇଛନ୍ତି ଏଠି।

ପିଲାଦିନରୁ ସିଦ୍ଧାନ୍ତଙ୍କ ସଙ୍ଗେ ଖୁବ୍ ବୁଲିଛି ଏଲିଜା। ପାହାଡ, ଝରଣା ସେ ଭଲପାଏ। ତଥାପି ଝିଅକୁ ପଚାରିଥିଲେ, ''କୋଉଠି ରହିବୁ ? ଲେକ୍‌କୂଳ ନା ପାହାଡ ପାଖରେ ?''

''ମୁଁ ଜାଣିନି, ବାବା। ଅଜିତ୍‌କୁ ପଚାର।''

ସିଦ୍ଧାନ୍ତ ଫୋନ୍ ଉଠାଇଲେ, ‘‘ଅଜୁ, ଆଜି ଯାକୁ ପଠଉଛି ଦିଲ୍ଲୀକୁ। ବର୍ମା ଜୁରିକ୍ ଯାଉଛି; ତା’ର କନ୍‌ଫରେନ୍ସ ଅଛି। ହୋଟେଲ ବୁକିଂ କରିଦେବ ତୁମ ପାଇଁ।’’

ସେ ପାଖରୁ କ’ଣ ଉତ୍ତର ଆସିଲା ଶୁଣି ପାରିଲା ନାହିଁ ଲିଜା। ପିଆନୋର ରିଡ୍‌ରେ ହାତ ରହିଗଲା। ବାପାଙ୍କ କଥା କାନରେ ପଡିଲା। ‘‘ଓଃ ଗ୍ରିଣ୍ଡେଲ୍‌ୱାଲଡ୍! ଖୁବ୍ ଭଲ। ଦେଖିଛି... ନା, ଲିଜା ଯାଇନାହିଁ। ଜନ୍ମ ହୋଇ ନଥିଲା... ହଁ, ସିଜନ୍ ଭଲ। କ୍ୟାଂପିଙ୍ଗ୍ ଗ୍ରାଉଣ୍ଡରେ? ଓ.କେ...।’’

ସିଦ୍ଧାନ୍ତଶେଖରଙ୍କ ବାପା ବ୍ରିଟିଶ୍ ସରକାରଙ୍କ ପଦସ୍ଥ କର୍ମଚାରୀ। ସିଦ୍ଧାନ୍ତ ପିଲାଦିନରୁ କେମ୍ବ୍ରିଜ୍‌ରେ ପଡିଛନ୍ତି। ବାହାରର ଆଦବ୍‌କାଇଦାରେ ବଢିଛନ୍ତି। ଅଥଚ ମା’ଙ୍କୁ ଦେଖି ନଇଁ ଯାଆନ୍ତି। ଛୁଟୀରେ ଆସିଲେ ସହର ପାଖ ତାଙ୍କ ଗାଁ ଘରଟି ତାଙ୍କୁ ମନେହୁଏ ଇନ୍ଦ୍ରପୁରୀ। ସାମନା ବଗିଚା ଖଣ୍ଡକ ସ୍ୱର୍ଗର ଉଦ୍ୟାନ। ପ୍ରତ୍ୟେକଟି ଫୁଲ, ଫଳରେ ମା’ଙ୍କ ହାତର ସ୍ପର୍ଶ। ସବୁଜ ଲନ୍, ଦେଶୀ, ବିଦେଶୀ ଫୁଲ। ମାର୍ବଲ ମୂର୍ତ୍ତି, ହାତୀ, ଘୋଡା, କୃତ୍ରିମ ଝରଣା। ଅନ୍ୟପାଖରେ ଛୋଟ ଗଛରେ ଆମ୍ବ, ପିଜୁଳି, ନାସପାତି।

ପ୍ରତ୍ୟେକଟି କାର୍ଯ୍ୟ ଶୃଙ୍ଖଳିତ। ଘର ପରିଚାଳନା, ଖାଇବା ସମୟ, ବିଛଣା, ଶୋଇବାଘର, ବେଶ ପୋଷାକ, କଥାବାର୍ତ୍ତା, ଅତିଥିଚର୍ଚ୍ଚା ସବୁଠି ସୌନ୍ଦର୍ଯ୍ୟର ଛାପ। ସୁନ୍ଦର ରୁଚି ତାଙ୍କର। ସେ ସମୟର ଜଣେ ବିତ୍ତଶାଳୀ ଜମିଦାରଙ୍କର ଝିଅ ସେ। ରୂପବତୀ, ସୁଶିକ୍ଷିତା। ସେ ଚାଲିଲେ ପଦ୍ମଫୁଟେ। କଥାରେ ମଧୁ ଝରେ।

ଜେଜେମା’ଙ୍କୁ ଦେଖିଛି ଏଲିଜା। ତାଙ୍କ ସଂପର୍କରେ ଅନ୍ୟମାନଙ୍କର ମତ ଏହି ଭଳି ଶୁଣିଛି। ସାନବେଳେ ଛୁଟୀରେ ସେ ଘରକୁ ଆସିଲେ ମା’, ଜେଜେମା’ଙ୍କୁ ପିଆନୋ ବଜେଇ ଶୁଣାଇଛି।

ମା’ଙ୍କୁ ଜେଜେମା’ ବୋହୁକରି ଆଣିଥିଲେ।

ଆଭିଜାତ୍ୟସଂପନ୍ନ ପରିବାରର ଅନିନ୍ଦ୍ୟା ସୁନ୍ଦରୀ, ସୁଶିକ୍ଷିତା, ଧୀର ମାର୍ଜିତ କଥାବାର୍ତ୍ତା।

ଅନନ୍ୟା ସିଦ୍ଧାନ୍ତଙ୍କ ମା’ ବାପାଙ୍କର ପସନ୍ଦ। ସିଦ୍ଧାନ୍ତଶେଖର ଇଂରେଜ ସଭ୍ୟତାର ପକ୍ଷପାତୀ ହୋଇଥିଲେ ହେଁ ଅନନ୍ୟାଙ୍କୁ ଦେଖି ମୁହଁ ଖୋଲି ପାରି

ନଥିଲେ। ପଦଟିଏ କଥା– "ମୁଁ ରାଜି, ମା'।"

ବଂଶାନୁକ୍ରମେ ସେମାନେ ସୁଖୀ ହୋଇଛନ୍ତି। ଐଶ୍ୱର୍ଯ୍ୟ, ଆଭିଜାତ୍ୟ, ଧର୍ମଭାବ, ସ୍ନେହ ଶ୍ରଦ୍ଧା, ବନ୍ଧୁବତ୍ସଳତା କେଉଁଥିରେ ଅଭାବ ଦେଖିନାହିଁ ଏଲିଜା। ତା'ର ବାଲ୍ୟରୁ ଯୌବନ, ବାଇଶ ବର୍ଷ ବୟସ ହେବା ପର୍ଯ୍ୟନ୍ତ ଜୀବନର ସମସ୍ୟା କ'ଣ ଜାଣି ନାହିଁ।

ଏକମାତ୍ର କନ୍ୟା !

ନିଜ ପାଇଁ ଚିନ୍ତା କରି ଶିଖି ନାହିଁ। ଜେଜେମା', ଜେଜେବାପା, ବାପା, ମା'ଙ୍କ ହାତରେ ସୌଖୀନ୍ କଣ୍ଢେଇ ହୋଇ ବଢ଼ିଛି। ସେ ଇଚ୍ଛା କରିବା ପୂର୍ବରୁ ପୃଥିବୀର ଶ୍ରେଷ୍ଠ ସୁନ୍ଦର ପଦାର୍ଥ ତା' ପାଖରେ ପହଞ୍ଚି ଯାଇଥାଏ।

ସ୍କୁଲ୍, କଲେଜ, ବିଶ୍ୱବିଦ୍ୟାଳୟର ସାଙ୍ଗ ଝିଅ, ପୁଅ କିଛି ପ୍ରଶ୍ନକଲେ, ଏଲିଜାର ଉତ୍ତର– "ଘରେ ପଚାରି କହିବି।"

"ତୋ ନିଜର ମତ ନାହିଁ?"

ସେମାନେ ହସନ୍ତି। ଏଲିଜା ଦୃଢ଼ ଭାବରେ ଉତ୍ତରଦିଏ, "କିଛି ଭୁଲ୍ କହିନାହିଁ। ସେମାନେ ମୋତେ ତାଙ୍କ ମନମୁତାବକ ଗଢ଼ିଛନ୍ତି। ମୁଁ ଅଧିକ ଚାହିଁବା ଭଳି କିଛି ନାହିଁ। ମୁଁ ସେମାନଙ୍କୁ ସମ୍ମାନ କରେ। ସେମାନେ ମୋର ଶୁଭେଚ୍ଛୁ। ପୂଜ୍ୟ ଗୁରୁଜନ କେବଳ ନୁହନ୍ତି, ବନ୍ଧୁ ମଧ୍ୟ। ଥରେ ଘରକୁ ଚାଲ ତ, ଆମ ପରିବାରର ସମସ୍ତଙ୍କୁ ଦେଖିଲେ ସବୁ ବୁଝିପାରିବ।"

ଏ ଦୃଢ଼ୋକ୍ତିରେ ସେମାନେ ବିସ୍ମିତ ହୁଅନ୍ତି। ହୁଏତ ଭାବନ୍ତି, ଏ କୋଉ ଯୁଗର ଝିଅ !

ଏଲିଜା ଜାଣିନି କୋଉଠି କ'ଣ ଭୁଲ୍ ରହିଲା ! ଅଜିତ୍ ସାମନ୍ତ ନାମରେ ବୁକିଂ ହୋଇଥିବା ଷ୍ଟାନଟିରେ ତାପସ ଦାସ ମହାପାତ୍ରର ଆଧିପତ୍ୟ !

କିଏ ଯଦି ଆସି ଯାଦୁର କାଠି ଛୁଆଇଁ କହି ଯାଆନ୍ତା, "ଯା... ଭୁଲିଯା। ଅଜିତ୍ କେହି ନୁହେଁ। ତୁ ତାକୁ ଚିହ୍ନିନାହୁଁ। କେବେ ବି ଦେଖିନୁ, ଭେଟିନୁ। ତୋର ସ୍ୱଳ୍ପ ପରିଚୟର ସୀମା ମଧ୍ୟରେ ସେ ଜଣେ କେହି। ଏଥିପାଇଁ ଏତେ ବ୍ୟସ୍ତ, ବିବ୍ରତ କାହିଁକି?"

ଅଜିତ୍ ! ଏ ନାଁର ଏମିତି କି ଆକର୍ଷଣ? ସଂପର୍କ ! କେତେଦିନର?

ସହଜ, ସାବଲୀଳ ଜୀବନ ଦୁର୍ବିସହ ମନେ ହେଉଛି।

ସେଥର ପୂଜାରେ ସେମାନେ ମସୌରୀ, ନୈନିତାଲ୍‌ରେ କିଛିଦିନ କଟାଇଲେ। ଅଜିତ୍ ସହ ପରିଚୟ ହେଲା ସିଦ୍ଧାନ୍ତଶେଖରଙ୍କର। ଓଡ଼ିଶା ବାହାରେ ଓଡ଼ିଆ ଜଣଙ୍କୁ ଭେଟି ହୋଟେଲକୁ ଡାକିଆଣିଲେ ସିଦ୍ଧାନ୍ତ। କୋଉଠି କେବେ ଅଜିତ୍‌ଙ୍କର ବାପାଙ୍କ ସହ କ୍ଲବରେ ଥରେ ପରିଚୟ ହୋଇଥିବା ବିଷୟ ଜଣାଇଲେ ଅନନ୍ୟାଙ୍କୁ।

ଅଜିତ୍‌ର ଚେହେରା, ବ୍ୟକ୍ତିତ୍ୱ, ଜ୍ଞାନ, ବୁଦ୍ଧି କେଉଁଥିରେ ବାଛିବାର ନାହିଁ। ସିଦ୍ଧାନ୍ତ, ଅନନ୍ୟା, ଏଲିଜା ସମସ୍ତଙ୍କ ସହ ସହଜଭାବରେ କଥାବାର୍ତ୍ତା କରୁଥିଲା ଅଜିତ୍।

ପୃଥିବୀର କେତୋଟି ଦେଶରେ ସେମାନଙ୍କର ବ୍ୟବସାୟିକ ଯୋଗସୂତ୍ର ରହିଛି। ବିଦେଶରେ ଶିକ୍ଷା ଶେଷ କରି ଅଳ୍ପଦିନ ହେବ ଫେରିଥିବା ବିଷୟ କହିଥିଲା ଅଜିତ୍। ଏକମାତ୍ର ଦାୟାଦ ହୋଇଥିବାରୁ ଜେଜେବାପା, ବାପାଙ୍କର ଏ ସମସ୍ତ ବ୍ୟବସାୟ ତାକୁ ହିଁ ସମ୍ଭାଳିବାକୁ ହେବ।

ସିଦ୍ଧାନ୍ତ ଅଜିତ୍‌ଠାରୁ ତା' ବାପାଙ୍କର ନାମ, ଠିକଣା ସଂଗ୍ରହ କଲେ।

ଏ ଯୋଗାଯୋଗ କ୍ୱଚିତ୍ ହୋଇଥାଏ। ଭଦ୍ର, ସଂଭ୍ରାନ୍ତ ପରିବାର। ଅଜିତ୍ ମଧ୍ୟ ଏଲିଜାକୁ ପସନ୍ଦ କରିଛି। ସେମାନେ ନୈନିତାଲ୍‌ରେ ପ୍ରତିଦିନ ପରସ୍ପରକୁ ଭେଟୁଥିଲେ। ଏଲିଜାର ମତ ଜାଣିବାର ଆବଶ୍ୟକ ହୋଇ ନଥିଲା। ତା' ବୁଝିପାରିଥିଲେ ଅନନ୍ୟା, ସିଦ୍ଧାନ୍ତ।

ପ୍ରତିଦିନ ଘରେ ବିବାହର ଆଲୋଚନା, ଖିଆପିଆ, ଉପହାର ଦେବାନେବା। ଏଲିଜା ଏକ ସୁନ୍ଦର ନୂଆ ଜୀବନର ସ୍ୱପ୍ନ ଦେଖୁଥିଲା।

ସିଦ୍ଧାନ୍ତଶେଖର ସ୍ଥିର କରିଥିଲେ ଅଜିତ୍ ଏଲିଜାଙ୍କର ନିର୍ବନ୍ଧ ମନ୍ଦିରରେ ହେଲେ ମଧ୍ୟ ପାଖ ସହରର ବଡ ହୋଟେଲରେ ସେ ପାର୍ଟି ଦେବେ। ଦିଲ୍ଲୀରେ ମଧ୍ୟ ତାଙ୍କର କେତେକ ବନ୍ଧୁ ଭୋଜି ମାଗିଛନ୍ତି। ତା' ବାଦ୍ ଯିବନାହିଁ।

ସିଦ୍ଧାନ୍ତ, ଅନନ୍ୟା ସେଦିନ ପାର୍ଟିରେ ପ୍ରତିଟି ଘନିଷ୍ଠ ବନ୍ଧୁଙ୍କ ସହ ଅଜିତ୍‌ର ପରିଚୟ କରାଇ ଦେଲେ। ଅଜିତ୍ ସାମନ୍ତଙ୍କର ବାପା, ମା' ଅତ୍ୟନ୍ତ ଆଗ୍ରହରେ ନିଜର ଭାବୀବଧୂକୁ ଦେଖାଉଥିଲେ ବନ୍ଧୁ ଆତ୍ମୀୟମାନଙ୍କୁ।

ଏଲିଜାର ଅନାମିକାରେ ଅଜିତ୍ ପିନ୍ଧାଇଥିବା ହୀରା ମୁଦିଟି ଅତ୍ୟନ୍ତ ଆକର୍ଷଣୀୟ ମନେହୋଇଥିଲା ସେଦିନ। ସେ ସଂପର୍କର ସେତୁ ସେ ଦୁହିଁଙ୍କୁ ଅଧିକ ନିକଟତର କରିଥିଲା।

ବିବାହର ଲଗ୍ନ, ସେଥିନିମନ୍ତେ ସେମାନଙ୍କର ପ୍ରସ୍ତୁତି, ଉଭୟ ପକ୍ଷ ବ୍ୟସ୍ତ ରହିବା ସମୟରେ ଅଜିତ୍, ଏଲିଜା ସ୍ୱାଧୀନ ପକ୍ଷୀ ଦୁଇଟି ପରି ଉଡି ବୁଲୁଥିଲେ।

ଶେଷଥର ପାଇଁ ସେ କଥା କହିଥିଲା ଅଜିତ୍ ସହ ବିବାହ ଲଗ୍ନର ତିନିମାସ ପୂର୍ବରୁ।

ସିଦ୍ଧାନ୍ତଶେଖର ବିବାହ ପୂର୍ବରୁ ହୋଟେଲ ବୁକିଂ ପାଇଁ ଫୋନ୍‌ରେ ମତାମତ ବୁଝୁଥିଲେ ଅଜିତ୍‌ର। ଏହାପରେ ନିଜର ବ୍ୟକ୍ତିଗତ ଫୋନ୍‌ରେ ଆଉଥରେ ଫୋନ୍ କରି ଅନେକ ସମୟ ପର୍ଯ୍ୟନ୍ତ ଏଲିଜା ସହ କଥା କହିଲା ଅଜିତ୍।

ଅଜିତ୍ ସହ ବେଶ୍ ପ୍ରଗଲ୍ଭା ହୋଇ ଉଠିଥିଲା ଏଲିଜା।

ଏବେ ଠିକ୍ ସେଇଭଳି କଥା କିଛି ତାପସ ମୁହଁରେ ଶୁଣିଲେ ତା' ଓଠରେ ଉତ୍ତର ହଜିଯାଏ। ସେ ମୂକ ବଧିର ଝିଅଟିଏ ଭଳି କିଛି ମୁହୂର୍ତ୍ତ ଅନେଇ ରହେ ତାପସକୁ, ସାମାନ୍ୟ ହସ ଝରିପଡେ ତା' ଓଠରୁ।

ସବୁବେଳେ ଖୁସି ଖୁସି ଦେଖାଯାଉଥିବା ସିଦ୍ଧାନ୍ତଶେଖର ହଠାତ୍ ସେଦିନ ଗମ୍ଭୀର, ବିମର୍ଷ ହୋଇ ତାଙ୍କ ଲାଇବ୍ରେରୀ ପ୍ରକୋଷ୍ଠରେ ଅନନ୍ୟାଙ୍କୁ ଧୀରେ କିଛି କହୁଥିବାର ଦେଖାଗଲା। ତା'ପରେ ଏଲିଜାକୁ ଡାକି ସେହି ଚରମ ନିଷ୍ଠୁର ନିଷ୍ପତ୍ତି ଶୁଣାଇଥିଲେ ସେ।

ନା, ଅଜିତ୍ ମଣିଷ ନୁହେଁ। ତା' ଚରିତ୍ରର ସ୍ଖଳନ ସେ ଜାଣିପାରିଛନ୍ତି। ବାହାରେ ଜଣେ ନୁହେଁ ବହୁଝିଅଙ୍କ ସହ ସେ ଦୈହିକ ସଂପର୍କ ରଖିଛି। ''ପଢ଼୍, ଏ ଚିଠିସବୁ। ଜଣେ ଅଜଣା ଶୁଭେଚ୍ଛୁଙ୍କର ଚିଠି। ବାରମ୍ବାର ସେ ଲେଖୁଛନ୍ତି, ମୋତେ ସତର୍କ କରୁଛନ୍ତି। ସେ ଲେଖିଛନ୍ତି, ଏଲିଜା ଭଳି ଶାନ୍ତ, ସରଳ ଝିଅଟିର ଜୀବନକୁ ଏଭଳି ନଷ୍ଟ ହେବାକୁ ଦିଅନ୍ତୁ ନାହିଁ।

ମୁଁ ଦିଲ୍ଲୀ ଯାଇଥିଲି। ତା' ଭେଟ ପାଇଲି ନାହିଁ। ସେ ବାହାର ଅତିଥିଙ୍କ ସହ ବ୍ୟସ୍ତ ଅଛି ବୋଲି ତା'ର ବ୍ୟକ୍ତିଗତ ସହାୟିକା କହିଲେ। ଅନେକ ସମୟ ଧରି ଜଣେ ଉଗ୍ର ଆଧୁନିକା ରୂପସୀ ତରୁଣୀଙ୍କ ସହ ନିଭୃତ ଅଫିସ କକ୍ଷରେ ବ୍ୟବସାୟିକ ଆଲୋଚନା ଏବଂ ପରେ ପରେ ତରୁଣୀ ଜଣଙ୍କୁ ନେଇ ସେଦିନ ବହୁ ବିଳମ୍ବରେ ସେ ଘରକୁ ଫେରିଥିବାର ଖବର ଜାଣି ବିରକ୍ତିରେ ମୁଁ ଅଧିକ ଦିନଟିଏ ସେଠାରେ ରହିବାକୁ ପସନ୍ଦ କରି ନଥିଲି। ଦେଖ୍ ଏ ଫଟୋ ସବୁ।''

ଏଲିଜା ନୀରବ, ଅନନ୍ୟା ମଧ୍ୟ। କୌଣସି ଦିନ ସିଦ୍ଧାନ୍ତ ଓ ଅନନ୍ୟାଙ୍କ ମଧ୍ୟରେ

ବିରୁଦ୍ଧ କଥାବାର୍ତ୍ତା ହୋଇନାହିଁ। ସିଦ୍ଧାନ୍ତଶେଖର ସେଭଳି ବ୍ୟକ୍ତି ନୁହନ୍ତି। ବାପା, ମା', ସ୍ତ୍ରୀ, ଝିଅ, ନିଜର ବୃତ୍ତି, ସମସ୍ତଙ୍କ ପ୍ରତି ଉଚିତ୍ କର୍ତ୍ତବ୍ୟ କରିଆସିଛନ୍ତି ସେ। କେଉଁଠି ହାରିଯାଇନାହାନ୍ତି। ଜୀବନରେ ପ୍ରଥମଥର ଏ ଧକ୍କା! ଏଠି ଅନ୍ୟ କ'ଣ ନିଷ୍ପତ୍ତି ନେଇ ପାରିଥାଆନ୍ତେ ?

ଏଲିଜା ବିଚଳିତ ହେଲା। ଭାବିଲା ପଚାରିବ— ବାବା, ଅଜିତ୍‌କୁ ତୁମେ ଠିକ୍ ବୁଝିନ। ଆଉଥରେ ଯାଅ। ଥରେ ଦେଖିଆସି ହସି ହସି କୁହ— ନା ରେ ଲିଜା, ଏସବୁ ଉଡାଖବର।

ଏଲିଜା ସିଦ୍ଧାନ୍ତଙ୍କ ଶୟନକକ୍ଷ ପାଖକୁ ଯାଇ ଫେରି ଆସିଛି। ତା' ପାଦ ସ୍ଥିର ହୋଇଯାଇଛି। କିଛି କହିପାରି ନାହିଁ।

:ବାବା, ଅଜିତ୍ ଭିନ୍ନ ମୁଁ ଆଉ କାହାକୁ ବିବାହ କରିପାରିବି ନାହିଁ। ଆଉ କିଛିଦିନ ଅପେକ୍ଷା କର।

...ଏମିତି କେତେ କ'ଣ ଏଲିଜାର ମନକୁ ଆସେ। ସିଦ୍ଧାନ୍ତଙ୍କ ବିଚାର ଭୁଲ ନହୋଇପାରେ ଏହା ଜାଣି ମଧ୍ୟ ଅଜିତ୍‌କୁ ଅନ୍ୟଜଣେ ସେ ଚିନ୍ତାକରି ଭାବିପାରେ ନାହିଁ।

ଏପାଖରେ ଅଜିତ୍ ମଧ୍ୟ ଖୁବ୍ ବ୍ୟସ୍ତରହିଥିବାର ସେ ଜାଣିଛି। ବିବାହ ପୂର୍ବରୁ ଅନେକଗୁଡିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଶେଷ କରିବାରେ ସେ ବ୍ୟସ୍ତ ରହି ଫୋନ୍ ମଧ୍ୟ କରିପାରିବ ନାହିଁ— ତା' ଜାଣିଥିଲା ଏଲିଜା।

ଏଲିଜା କାହାକୁ କ'ଣ କହିବ ? ସେ ଅଜିତ୍ ଭିନ୍ନ ଅନ୍ୟ କାହାକୁ ଗ୍ରହଣ କରିପାରିବ ନାହିଁ— ଏହି ପଦଟିଏ କଥା ଅନନ୍ୟାଙ୍କୁ ମଧ୍ୟ କହିପାରି ନଥିଲା। ମନର ସମସ୍ତ ଦ୍ୱନ୍ଦ୍ୱ ସତ୍ତ୍ୱେ ଅଜିତ୍‌କୁ ଫୋନ୍ କରି ସେ ଶୁଣିଲା, ସାତଦିନ ପାଇଁ କାହାର ଫୋନ୍ ତାକୁ ନଦେବାପାଇଁ ବ୍ୟକ୍ତିଗତ ସହାୟିକାକୁ ନିର୍ଦ୍ଦେଶ ଦେଇଛି ଅଜିତ୍।

ହୁଏତ ଏସବୁ ସତ୍ୟ। ସିଦ୍ଧାନ୍ତଶେଖର ଏମିତି କାନକୁହା କଥାରେ ଭୁଲିବାର ଲୋକ ନହୁଁନ୍ତି। ବାରମ୍ବାର ଅନନ୍ୟା ଏହିକଥା କହିଥିଲେ ଏଲିଜାକୁ।

ଜୀବନରେ ଥରେ ହେଲେ କେଉଁ କଥାରେ ପ୍ରତିବାଦର ସ୍ୱର ଉଠେଇ ନଥିବା ଏଲିଜା ଏଥର ନୀରବ ରହିଗଲା। ସବୁ ପଛଦିନର ସ୍ମୃତି ତାକୁ ଅସ୍ଥିର କରୁଛି କି ନାହିଁ ସେ କାହାକୁ ଜାଣିବାକୁ ଦେଲାନାହିଁ।

ତାପସ ଦାସ ମହାପାତ୍ର କେଉଁ ଅଖ୍ୟାତ ପଲ୍ଲୀର ଦରିଦ୍ର ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ ମେଧାବୀ ଛାତ୍ର ଭାବେ ବେଶ୍ ସୁନାମ ଅର୍ଜନ କରିଥିଲା। ପରୀକ୍ଷାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରି ସେ ଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେବା ଏବଂ ସଂବାଦପତ୍ରରେ ତାହା ଦେଖିବା ପରେ ତାପସ ସହ ଏଲିଜାର ବିବାହ ପ୍ରସ୍ତାବ ଯଥାଶୀଘ୍ର ଆଗେଇ ନେଇଥିଲେ ସିଦ୍ଧାନ୍ତ। ସେତେବେଳେ ସତକୁ ସତ ବାପା, ମା'ଙ୍କ ହାତରେ ଖେଳନାଟିଏ ପାଲଟିଗଲା ଏଲିଜା।

ତାପସ ଘରେ ଏଭଳି ମୂଲ୍ୟବାନ୍ କଣ୍ଢେଇଟି ପ୍ରତି ସ୍ନେହ ଆଦର ମଧ୍ୟ ଊଣା ହୋଇ ନଥିଲା।

ବିବାହ ପରେ ସେ ଅନୁଭବ କରିଛି, କେଉଁଠି କିଛି ଯେପରି ହଜିଯାଇଛି। ସେଇ ପଦଟିଏ କଥା, ଯେଉଁ ସ୍ୱର ତା' ଆତ୍ମା ଉଚ୍ଚାରଣ କରୁଥିଲା– ''ଅଜିତ୍‌କୁ ଆଣିଦିଅ, ମୁଁ ତାକୁ ଚାହେଁ। ତା' ଭିନ୍ନ ଆଉ କେହି ନୁହେଁ, କେହି ନୁହେଁ।''

ଏଲିଜା ଚିନ୍ତିତ ହୋଇ ପଡିଲା। ଅଜିତ୍ ସହ ସନ୍ଧ୍ୟାରେ ଦେଖା ହେବ। ତାପସ ତାକୁ ନିମନ୍ତ୍ରଣ କରିଛି। କହିଛି, ''ହୋଟେଲ ନୁହଁ, ଆମସହ ଖାଇବେ ଏଇଠି। ଆମେ ରାନ୍ଧି ଖାଉଛୁ। ମୋ ସ୍ତ୍ରୀ ଲିଜା ଖୁବ୍ ଭଲ ରାନ୍ଧନ୍ତି। ଲ୍ୟାଣ୍ଡ୍‌ଲେଡିଙ୍କ ପାଖରୁ ଅନ୍ୟାନ୍ୟ ଖାଦ୍ୟ ନେଇ ଆସିବା। ଅନେକ ରାତି ପର୍ଯ୍ୟନ୍ତ ଗଳ୍ପର ଆସର ଜମି ଉଠିବ।''

''କ'ଣ କହୁଛ, ଲିଜା? ମଝିରେ ମଝିରେ ଟିକିଏ ଚେଞ୍ଜ୍ ଦରକାର। ନୁହେଁ କି? ଅଜିତ୍ ଖୁବ୍ ମେଜାପୀ, ବିବାହ କରିନାହିଁ। ନିର୍ବନ୍ଧ ହୋଇଥିଲା। ପ୍ରସ୍ତାବ ଭାଙ୍ଗିଗଲା। ଝିଅଟିକୁ ଭୁଲି ପାରିନାହିଁ ଏଯାଏ।''

ଗତ ରାତିରେ ସହଜଭାବରେ ଅନେକ କଥା କହିଲା ତାପସ। ଏଲିଜା ନିଦର ଛଳନା କଲା। ଅଧିକ ଶୁଣିଲା ନାହିଁ। ଅନ୍ୟ ପାଖକୁ ମୁହଁ ବୁଲାଇ ଶୋଇ ରହିବା ସମୟରେ ତା' ଆଖିର ଲୁହ ଦେଖି ପାରିଲା ନାହିଁ ତାପସ।

ଏବେ ଅଜିତ୍ ଯେ ତା'ର କେହି ନୁହଁ– ଏହି ଛୋଟ କଥାଟି ସେ ନିଜକୁ ବୁଝାଇ ପାରୁନି।

ତାପସ ଅଜିତ୍ ସଂପର୍କରେ, ଏପରିକି ଏଲିଜାର ବିବାହ ପ୍ରସ୍ତାବ ପ୍ରଥମେ କେଉଁଠି ସ୍ଥିର ହୋଇଥିଲା, ଏସବୁରେ ମୁଣ୍ଡ ଖେଳାଇବାକୁ ସମୟ ପାଇନାହିଁ

ଏଯାଏ। ମାତ୍ର ଅଜିତ୍? ପରିଚୟ ପରେ ସେ ତ ନିଶ୍ଚୟ ତାପସ୍ ଦାସ ମହାପାତ୍ରଙ୍କୁ ଜାଣିପାରିଥିବ। ଏବଂ ଏଲିଜାର ବିବାହ ବିଷୟ ମଧ୍ୟ। ସେ କିପରି ରାଜି ହେଲା ଆସିବା ପାଇଁ!

ଏଲିଜା ବିରକ୍ତିରେ ବିଛଣାରେ ଉଠିବସିଲା। ତାପସ ଗାଧୋଇ ଫେରିଆସିଛି।

''ଲିଜା, ଏ କ'ଣ? ଦେହ ଭଲ ନାହିଁକି? ଏପର୍ଯ୍ୟନ୍ତ ପ୍ରସ୍ତୁତ ହୋଇନାହିଁ? ଜାଣିଛ, ଏବେ ଅଜିତ୍ ଆସିଥିଲା।''

''ଅଜିତ୍ କାହିଁ?'' ପାଗଳୀଙ୍କ ଭଳି ବାହାରକୁ ଧାଇଁ ଗଲା ଏଲିଜା।

ତାପସ ହସି ପକାଇଲା ଜୋରରେ। ''ଶୁଣ, ମୁଁ କଥା ଶେଷ କରିନାହିଁ। ସେ ମୋତେ କହିବାକୁ ଆସିଥିଲା ଯେ ସେ ଏବେ ଜେନେଭା ଫେରିଯାଉଛି। ତେଣୁ ରାତିରେ ମୋ ନିମନ୍ତ୍ରଣ ରକ୍ଷା କରି ପାରୁନାହିଁ। କ୍ଷମା ମାଗିଲା।''

ଏଲିଜା ଏବେ ହସୁଛି ବା କାନ୍ଦୁଛି କିମ୍ୱା ଯାହା କହୁଛି ସେସବୁ ତା'ର ଅନ୍ତରର କଥା କି ନୁହେଁ?– ଏସବୁ ଭାବିବା ପାଇଁ ତାପସ ପାଖରେ ସମୟ ନଥିଲା। ଏଲିଜାକୁ ନେଇ ସୁଇଜରଲ୍ୟାଣ୍ଡର କେଉଁ ହ୍ରଦକୂଳରେ ସେ ଅଧିକ ସମୟ ବିତାଇ ସନ୍ଧ୍ୟା ପରେ କିପରି ଫେରିଆସି ପାରିବ, ସେ ଯୋଜନା କରି ସେ ରୋଡ୍‌ମ୍ୟାପ୍ ଦେଖିବାରେ ବ୍ୟସ୍ତ ଥିଲା।

□ □

# ଉତ୍ତରଣ

ନୂଆଦିଲ୍ଲୀର ଇଣ୍ଟରନ୍ୟାସନାଲ୍ ଏୟାରପୋର୍ଟ ଭିତରକୁ ଏକା ଏକା ପ୍ରବେଶ କରିବା ସମୟରେ ସାଧନା ଅକସ୍ମାତ୍ ସ୍ୱରୂପର ହାତ ଚାପିଧରିଲା। ପୂର୍ବରୁ ବହୁତ ବେଶୀ କଥା କହୁଥିବା ସାଧନା ହଠାତ୍ ଏମିତି ଚୁପ୍ କରିଯିବ, ସ୍ୱରୂପର ଉପଦେଶ ମନଦେଇ ଶୁଣିବ, ଅଥଚ ଗୋଟିଏ ବି ଶବ୍ଦ ଉଚ୍ଚାରଣ କରିବ ନାହିଁ, ଏମିତି କେବେ ହେବାର ନ ଥିଲା !

ଏ ମୁହୂର୍ତ୍ତରେ ସାଧନା ଆଉ କ'ଣ କରି ପାରିଥାଆନ୍ତା ? ଯାହା କହିବା କଥା ଅନେକ ପୂର୍ବରୁ କହିଛି।

''ଏକାଠି ଯିବା। ମୋର ଏକା ଯିବା ପ୍ଲାନ୍ କର ନାହିଁ।''

''ବି ପ୍ରାକ୍ଟିକାଲ୍। ତୁମେ ପିଲାଙ୍କ ପାଖକୁ ଯାଉଚ। ସେପାଖରେ ଝିଅ ତୁମ ଆସିବା ରାସ୍ତାକୁ ଚାହିଁ ରହିଛି। ଏ କଥା ଥରେ ଭାବ।''

ସ୍ୱରୂପକୁ ନୂଆ ଚିହ୍ନିବା ଭଳି ଚାହିଁ ରହିଲା ସାଧନା। ଅଦ୍ଭୁତ ! କିଛି ଲାଗେ ନାହିଁ ଯା'ଙ୍କୁ ?

ପାସ୍‌ପୋର୍ଟ, ଭିସା, ଆନୁସଙ୍ଗିକ କାର୍ଯ୍ୟ ଶେଷ ପରେ, ପ୍ରତିଟି ବ୍ୟବହାର୍ଯ୍ୟ ପଦାର୍ଥ, ଶାଢ଼ି, କସ୍‌ମେଟିକ୍‌ସରୁ ଆରମ୍ଭ କରି କଲମ, ଡ଼ାଏରୀ ପର୍ଯ୍ୟନ୍ତ ସୁନ୍ଦର ଭାବରେ ପ୍ୟାକିଂ କରି ରଖିଲା ସ୍ୱରୂପ। ସେ ସମୟରେ ବି ଥରଟିଏ କହିନାହିଁ, 'ଏଠି ଯେତେ ଯିଏ ଥିଲେ ବି ତୁମେ ନ ଥିଲେ ଭଲ ଲାଗେ ନାହିଁ।'

ଏମିତି ଭାବ ମନ ଦୋହଲାଇ ଦିଏ ନାହିଁ ?

ଶୋଇବାଘରେ ବିଛଣା ସାରା ନେବାକୁ ଥିବା ଜିନିଷ ସବୁ ଅସଜଡ଼ା ହୋଇ ପଡ଼ିରହିଥାଏ। ତା'ରି ମଝିରେ ମୁଣ୍ଡତଳେ ତକିଆ ନ ଦେଇ ଶୂନ୍ୟ ଦୃଷ୍ଟିରେ

ଛାତକୁ ଚାହିଁ ଶୋଇ ରହିଥିବା ସାଧନାକୁ ଦେଖି ବିରକ୍ତ ହେଲା ସ୍ୱରୂପ।

"ଏ କ'ଣ? ଟିନ୍‌ଏଜ୍‌ର ଝିଅଙ୍କ ଭଳି ହଉଚ? ଦୁଇ, ତିନିଟା ମାସ ଘର ଛାଡ଼ି ବାହାରକୁ ଯିବା କ'ଣ ଏତେ ବେଶୀ କଷ୍ଟ?"

ଅନ୍ୟଦିନ ହୋଇଥିଲେ ଯାର ଉତ୍ତରରେ ସାଧନା ଅସନ୍ତୁଷ୍ଟ ସ୍ୱରରେ କହିଥାଆନ୍ତା, 'କେବେ ହେଲେ ବୁଝିପାରିଲନି ମୋତେ!'

—ଯାଅ, ସମୟ ହେଇଗଲା। ଖୁସିରେ ଯାଅ। ମୁଁ ଫୋନ୍ କରିବି।

ସ୍ୱରୂପ ହସିଲା ଅନ୍ତରଙ୍ଗ ଭାବରେ। ତା'କୁ ଥରେ ଚାହିଁ ଦେଇ ଜିନିଷ ନେଇ ଭିତରକୁ ବାହାରିଗଲା ସାଧନା।

ଏୟାର୍‌ପୋର୍ଟ ଟାକ୍ସ ଦେବା, ଡ଼ଲାର୍ ଭଂଗେଇବା ଇତ୍ୟାଦି ଆବଶ୍ୟକୀୟ କାର୍ଯ୍ୟ ପରେ ପରେ ସିକ୍ୟୁରିଟି ଚେକ୍!

ଏ ତା'ର ପ୍ରଥମ ବିଦେଶ ଯାତ୍ରା, ତା' ପୁଣି ଏକା ଏକା!

ଲୁଫ୍‌ଥାନ୍‌ସା ଏୟାରକ୍ରାଫ୍ଟ ପ୍ରସ୍ତୁତ ହେଲାଣି। ବୋର୍ଡ଼ିଂ ଘୋଷଣା ପରେ ଯାତ୍ରୀମାନେ ଏୟାରକ୍ରାଫ୍ଟ ଉଦ୍ଦେଶ୍ୟରେ ବାହାରି ଗଲେଣି।

ଅପେକ୍ଷାକୃତ ଅଧିକ ଓଜନର ବ୍ୟାଗ୍‌ଟି ସାବଧାନରେ ଉଠାଇ ସେମାନଙ୍କୁ ଅନୁସରଣ କଲା ସାଧନା।

ବୋର୍ଡ଼ିଂକାର୍ଡ଼ ଦେଖି ସିଟ୍‌ଟା ଖୋଜିନେବାରେ ଅସୁବିଧା ହେଲା ନାହିଁ।

ପାଖରେ ବସିଥିବା ବିଦେଶୀ ଯୁବକଟି ତା'କୁ ଏମିତି ଚାହିଁଛି କାହିଁକି? ହାତରେ ଧରିଥିବା ବହିଟିରେ ସମ୍ଭବତଃ ତା'ର ନାଁ, ଫ୍ରେଡ଼୍‌ରିକ୍ ଲେଖା ଥିଲା।

ଫ୍ରେଡ଼୍‌ରିକ୍, ସାଧନା ସହ ଆଳାପ କରିବାକୁ ଖୁବ୍ ଚାହୁଁଥିଲା। ହଠାତ୍ ତା' ଭାଷାରେ ପଚାରିଲା, "ଆପଣ ଫ୍ରାଙ୍କ୍‌ଫର୍ଟରୁ କୁଆଡ଼େ ଯିବେ?"

"ବ୍ରସେଲ୍‌ସ୍।"

"ମୁଁ ଯିବି ଆମଷ୍ଟର୍‌ଡ଼ମ୍।"

"ଇଣ୍ଡିଆ ବୁଲାବୁଲି କରିବାକୁ ଆସିଥିଲେ?" ସାଧାରଣ ଭାବରେ କଥାଟା ପଚାରିଦେଲା ସାଧନା। କିଛି ତ କହିବ।

"ମୁଁ ପ୍ରାୟ ଆସେ। ରହିଯାଏ ବେଶ୍ କିଛିଦିନ ଆର୍ଟ, ମ୍ୟୁଜିକ୍ ଶିଖିବା ପାଇଁ।"

ସାଧନା ବିସ୍ମୟରେ ଚାହିଁଲା ଫ୍ରେଡ଼୍‌ରିକ୍‌କୁ।

"ଆଇ ଲାଇକ୍ ଇଓର୍ କଣ୍ଟ୍ରି।" ଫ୍ରେଡ୍‌ରିକ୍‌ର ମୁହଁରେ ଆତ୍ମୀୟତାର ହସ।

"ଓଃ ଥ୍ୟାଙ୍କ୍ ଇଉ।" ସାଧନା କୃତଜ୍ଞତା ଜଣାଇଲା।

"ଇଫ୍ ଇଉ ଡ଼ୋଣ୍ଟ୍ ମାଇଣ୍ଡ, ଆପଣ କ'ଣ କରନ୍ତି?" ଆଗ୍ରହରେ ପଚାରୁଛି ଫ୍ରେଡ୍‌ରିକ୍।

ସାଧନା କ'ଣ କହିବ? ହାଉସ୍ ୱାଇଫ୍? ନିଜର ବୁଦ୍ଧି ଖଟେଇ ଉତ୍ତରଦେଲା ସେ,

"ମୁଁ ଲେଖାଲେଖି କରେ।"

ହଠାତ୍ ଯେମିତି ଅନେକ କିଛି ବୁଝିଗଲା ଫ୍ରେଡ୍‌ରିକ୍। ଭାବିନେଲା, ଏମିତି କିଛି ସାହିତ୍ୟର କାରବାର ନେଇ ହୁଏତ ଇଣ୍ଡିଆରୁ ବେଲ୍‌ଜିଅମ୍ ଆସିଛି ସାଧନା।

ସ୍ୱଳ୍ପ ପରିଚୟ। ବିଦେଶୀ ଯୁବକ ଜଣଙ୍କୁ ଏତେ ବେଶୀ କ'ଣ ବା କହିବ ସାଧନା?

"ମାଇଁ ମଦର ଇଜ୍ ଏ ଫିକ୍‌ସନ୍ ରାଇଟର। ସେ ଏକାକୀ ରହନ୍ତି ତାଙ୍କ କଣ୍ଟ୍ରି ହାଉସ୍‌ରେ। ମୁଁ ତାଙ୍କୁ ଦେଖିବାକୁ ଆସୁଛି।"

ଫ୍ରେଡ୍‌ରିକ୍ ଏତିକି କହିବା ପରେ କ'ଣ ଚିନ୍ତା କରିବା ଭଳି ମନେ ହେଲା।

ଏୟାର ହୋଷ୍ଟେସ୍‌ଙ୍କ ହାତରୁ ଥଣ୍ଡାପାନୀୟର ଗ୍ଲାସ୍‌ଟି ନେଇ ସାଧନା ପଚାରିଲା, "ଅନ୍ୟମାନେ?"

"ହଁ, ମୁଁ ରହେ ମୋର ହାଫ୍ ବ୍ରଦର୍, ହାଫ୍ ସିଷ୍ଟର ରହିଥିବା ବିଲ୍‌ଡ଼ିଂରେ। ଅଫ୍‌କୋର୍ସ ଆମ ପ୍ରତ୍ୟେକଙ୍କର ସେପାରେଟ୍ ଆପାର୍ଟମେଣ୍ଟ୍। ବାପା ରହନ୍ତି ଦୂରରେ ତାଙ୍କ ସ୍ତ୍ରୀଙ୍କ ସହ।"

ସାଧନା ଏମିତି ସବୁ କଥା ଶୁଣିବାରେ କେବେ ଅଭ୍ୟସ୍ତ ନ ଥିଲା। ତା'କୁ ବିଚ୍‌ଳିତ ଲାଗିଲା।

ଟି.ଭି ସ୍କ୍ରିନ୍‌ରେ ଚାଲୁଥିବା ଇଂରେଜୀ ଚଳଚ୍ଚିତ୍ରର ଏବେ ବିୟୋଗାନ୍ତକ ଦୃଶ୍ୟ।

ଚଳଚ୍ଚିତ୍ରର ନାୟକ, ତା'ର ଏକଦା ପ୍ରେମିକ, ପତ୍ନୀକୁ ତ୍ୟାଗ କରିବାକୁ ସ୍ଥିର କରିଛି। ବିବାହର ଚାରି, ପାଞ୍ଚ ବର୍ଷପରେ ସେମାନେ ପରସ୍ପରଠାରୁ ସ୍ୱତନ୍ତ୍ର ହେବାକୁ ସ୍ଥିର କରିଛନ୍ତି ଏକ ବଂଧୁତ୍ୱପୂର୍ଣ୍ଣ ବାତାବରଣରେ। ଅନ୍ୟ ଏକ ତରୁଣୀକୁ ବିବାହ କରିବାକୁ ସ୍ଥିର କରିଥିବା ବିଷୟଟି ସେଦିନ ପତ୍ନୀଙ୍କ ଜନ୍ମଦିନର ପାର୍ଟିରେ ସେ ଘୋଷଣା କରିଛି କେତେଜଣ ବଂଧୁ, ଆତ୍ମୀୟଙ୍କ ଉପସ୍ଥିତିରେ।

ଫ୍ରେଡ୍‌ରିକ୍ ଖୁବ୍ ମନ ଦେଇ ଛବିଟି ଦେଖୁଥିଲା। ଚଳଚ୍ଚିତ୍ରର ନାୟକ ପାର୍ଟି

ପରେ ପରେ ପତ୍ନୀଙ୍କଠାରୁ ବିଦାୟ ନେଉଛି। ବାହାରେ ଅପେକ୍ଷା କରିଛି ଅନ୍ୟ ତରୁଣୀଟି।

ସେମାନଙ୍କ ଅଭିନୟ ବେଶ୍ ଜୀବନ୍ତ। ଫ୍ରେଡ୍‌ରିକ୍‌ର ଆଖି ସଜଳ ହୋଇ ଉଠିଛି।

ପୂର୍ବରୁ ସେ ଡା' ମା'ଙ୍କର ଏକାକୀ ଜୀବନ ସଂପର୍କରେ ଭାବି ସାମାନ୍ୟ ବ୍ୟସ୍ତ ଥିବା ଭଳି ମନେ ହେଉଥିଲା।

ଏ ସମସ୍ତ ବିଷୟ ଏକାଠି କରି ଭାବୁଥିଲା ସାଧନା। ତେବେ ୟୁରୋପ୍, ଆମେରିକା ଇତ୍ୟାଦିର ବିକାଶଶୀଳ ଦେଶମାନଙ୍କରେ ସାମାନ୍ୟତମ ଅସନ୍ତୋଷ ସହ୍ୟ ନକରି ପତିପତ୍ନୀ ପରସ୍ପରଠାରୁ ବିଚ୍ଛିନ୍ନ ହେବା ଏକ ସାଧାରଣ ଘଟଣା।

ଏୟାରକ୍ରାଫ୍‌ଟି ଇରାନ୍ ଆକାଶରେ ଯାଉଥିବା ବିଷୟ ଟି.ଭି ସ୍କ୍ରିନ୍‌ରେ ମ୍ୟାପ୍ ଦେଖାଇ ସୂଚେଇ ଦିଆଯାଉଛି। ସେପାଖରୁ ମୁହଁ ଫେରାଇ ଫ୍ରେଡ୍‌ରିକ୍ ବନ୍ଧୁଟିଏ ଭଳି କଥାବାର୍ତ୍ତା ଆରମ୍ଭ କରିଛି ସାଧନା ସହ।

''ଖୁବ୍ ସୁନ୍ଦର ଥିଲା ସେ ଦିନସବୁ। ଦଶବର୍ଷର ଶିଶୁଟିଏ, ତା' ଜୀବନରେ ଏତେ ବେଶୀ ସୁଖ ଦେଖିବା ପରେ ଅକସ୍ମାତ ସେଇ ଛବିରେ ରଂଗ ସବୁ ନଷ୍ଟ ହେଇଯିବାର ଦେଖିଲେ କ'ଣ ମନେହେବ ତା'ର ?''

କିଛି ସମୟ ଚୁପ୍‌ଚାପ୍ ବସି ରହିଲା ଫ୍ରେଡ୍‌ରିକ୍। ହାତରେ ଧରିଥିବା ଫରାସୀ ଉପନ୍ୟାସ ବହିଟି ଅନେକବେଳୁ ବନ୍ଦକରି ରଖି ଦେଇଥିଲା ସେ।

ଫେରିଯାଉଥିଲା ଅନେକ ବର୍ଷ ତଳକୁ। ମନେ ପକାଇବାକୁ ଚେଷ୍ଟା କରୁଥିଲା ସେଇଦିନମାନଙ୍କୁ।

''ମାଇଁ ଫାଦର ଇଜ୍ ଏ ସାଇନ୍‌ଟିଷ୍ଟ। ୟୁନିଭରସିଟିର ଗବେଷଣାଗାରରେ ତାଙ୍କର କାର୍ଯ୍ୟ। ଘରକୁ ଫେରି ଆମ ସହ କେତେ ଘଣ୍ଟା ହସ ଖୁସିରେ ବିତାଇବା ପରେ ସେ ବିଶ୍ରାମ ନେଉଥିଲେ। ମା'କୁ ଖୁସିରେ ରଖିବା ତାଙ୍କର ବଡ଼ କାମଥିଲା ଘରକୁ ଫେରିଲେ। ଉଇକ୍ ଏଣ୍ଡ୍‌ରେ, କେବେକେବେ ଗାର୍ଡ଼େନ୍‌ରେ ବସି ମୁଁ ଗିଟାର୍ ବଜାଏ। ମା', ବାପା ଅନେକ ସମୟ ପର୍ଯ୍ୟନ୍ତ ଡ୍ୟାନ୍ସରେ ମଜ୍ଜି ରହନ୍ତି। ଶେଷରେ ମୋ ହାତ ଟାଣି ଆଣନ୍ତି ବାପା। ଆମେ ତିନିହେଁ ଗାଇବାରେ ଲାଗୁ ଆମର ସେଇ ପ୍ରିୟ ଗୀତଟି। ରାତି ପାହିଯାଏ। ଏନ୍‌ଜୟମେଣ୍ଟ୍ ଶେଷ ହୁଏ ନାହିଁ।''

ଫ୍ରେଡ୍‌ରିକ୍ ଯେପରି ସ୍ୱପ୍ନରାଜ୍ୟକୁ ଚାଲିଯାଇଥିଲା। ନିଜେ ନିଜେ ଗୁଣୁଗୁଣୁ ହେଇ କେଉଁ ଗୀତର ସ୍ୱର ଧରିଲା ସେ।

ସାଧନା ସାମାନ୍ୟ ଭାବରେ ସେଇ ଫରାସୀ ସଂଗୀତଟି ଶୁଣିପାରୁଥିଲେ ମଧ୍ୟ ବୁଝିବାରେ ଅସୁବିଧା ଥିଲା। ତେବେ ସ୍ୱରରେ ଲାଳିତ୍ୟ ଥିଲା।

''ମୋତେ କୋଳେଇ ନେଇ ବାପା କହନ୍ତି, 'ପୁଅ ଦେଖ୍, ତୋ ମା' ଜଣେ ଲିଟେରୟାରୀ ପରସନ୍, କ୍ରିୟେଟିଭ୍ ଆର୍ଟିଷ୍ଟ୍। ଅଥଚ ବିଜ୍ଞାନ ସହ ମୋର କାରବାର୍। ଚାଲ, ଆମେ ଦୁହେଁ ମା'କୁ ଖୁସିରେ ରଖିବାକୁ ଚେଷ୍ଟା କରିବା।'

ମା'ଙ୍କୁ ତାଙ୍କ ଟେବୁଲ୍‌ପାଖରୁ ଶୂନ୍ୟେ ଶୂନ୍ୟେ ଟେକି ଆଣନ୍ତି ସେ ପାର୍ଟି ହଲ୍‌କୁ। ଆମେ ତିନିହେଁ ତିନୋଟି ଫ୍ରେଣ୍ଡ୍ ହେଇଯାଉ। ଗୀତ ଗାଇବା, ନାଚିବା, ଡ଼ିନାର୍ ଖାଇବା, ସବୁକାମ ଚାଲିଥାଏ ଆନନ୍ଦ ଉଲ୍ଲାସରେ।''

ଫ୍ରେଡ୍‌ରିକ୍ କଥା କହୁ କହୁ ଚୁପ୍ ହୋଇଗଲା। ତା'ର ଦୀର୍ଘଶ୍ୱାସ ସାଧନାକୁ ସ୍ପର୍ଶ କରିଥିଲା। ପରିବେଶ ଏବଂ ନିଜକୁ ଭୁଲି ପୁଣିଥରେ ସେ ଫେରିଗଲା ଶୈଶବକୁ।

''ସମର୍‌ରେ ଆମ କାରାଭାନ୍ ହାଉସଟି ଗାଡ଼ି ପଛରେ ଲଗାଇ ବାପା, ମା', ମୁଁ ଚାଲିଯାଉ କୌଣସି ପାହାଡ଼ ପାଖ ହ୍ରଦକୂଳକୁ। ସାଙ୍ଗରେ ଥାଏ ଦଶ, ପନ୍ଦରଦିନର ଚଳିବା ସରଞ୍ଜାମ। ଗାଡ଼ି ଉପରେ ଲଦା ହୋଇଥାଏ ଛୋଟ ବୋଟ୍, ସାଇକେଲ୍ ତିନୋଟି ଆମ ତିନିଜଣଙ୍କର।

ଆଃ, ମଜାର ଦିନ ସେ ସବୁ। ହ୍ରଦ ପାଖରେ, ଜଂଗଲ ରାସ୍ତାରେ ସାଇକେଲ୍ ଧରି ଅଳ୍ପ ଅଳ୍ପ ଖରାରେ ବୁଲିବାରେ ଆନନ୍ଦଥାଏ।

କେବେ କେବେ ହ୍ରଦକୂଳର ରେଷ୍ଟୁରାଣ୍ଟରେ ୱାଇନ୍ ଗ୍ଲାସ୍ ଧରି ସାରାଦିନ ବସି ରହନ୍ତି ମା', ବାପା। ନୃତ୍ୟ ସହ ଗୀତ ଗାଇ ସମସ୍ତଙ୍କର ମନୋରଂଜନ କରୁଥାଏ ଜଣେ କେହି ନର୍ତ୍ତକୀ। ତା' ସହ ଗିଟାର ବଜାଉଥିବା ଜଣେ ପାଖ ଆଖର ଶିଳ୍ପୀ। ମୁଁ ମୋର କିଛି ଖେଳ ସାମଗ୍ରୀ ନେଇ ପଡ଼ିଆରେ ଖେଳୁଥାଏ। କେବେ କେବେ ଧାଇଁ ଆସୁଥାଏ ମା' ବାପାଙ୍କ ପାଖକୁ, ପୁଣି ଫେରିଯାଏ ମୋ ଖେଳସ୍ଥାନକୁ। ସେମାନେ ଜାଣିପାରନ୍ତି ନାହିଁ। ଖୁସି ଗପରେ ହଜିଯାଇ ଥାଆନ୍ତି।

ସଂଧ୍ୟା ପୂର୍ବରୁ ଆମେ ଫେରିଆସୁ ସେଇ କ୍ୟାଂପିଗ୍ରାଉଣ୍ଡରେ ଥିବା ଆମ କାର୍‌ଭାନ୍ ହାଉସ୍‌କୁ। ମା', ବାପା ଏକାଠି ମିଶି ଡ଼ିନର୍ ପ୍ରସ୍ତୁତ କରନ୍ତି। ଆମେ ଖାଇବସୁ ବାହାରେ ପୋର୍ଟେବଲ୍ ଟେବୁଲ୍, ଚେୟାର୍ ପକେଇ ଗୋଲାପ ଏବଂ ଅନ୍ୟାନ୍ୟ ସିଜିନାଲ୍ ଫୁଲ ଘେରା ଆମ କାରାଭାନ୍ ହାଉସ୍ ଥିବା କ୍ଷୁଦ୍ର ବଗିଚାଟି ମଧ୍ୟରେ।

ସେଇ ଆନନ୍ଦର ରଂଗ ମା'ଙ୍କ ଜୀବନ କାନ୍‌ଭାସ୍‌ରୁ ଏଡ଼େ ଶୀଘ୍ର ପୋଛି ହେଇଯିବ, ତା' ହୁଏତ ମା' କିମ୍ବା ମୁଁ କେବେ ଭାବି ନଥିଲୁ।

ବାପା ଯେବେ ପ୍ରଥମ କରି ଜେନି ସହ ତାଙ୍କ ବଂଧୁତା ବିଷୟରେ କହିଲେ, ମା' ହୁଏତ ସବୁ ଅନୁମାନ କରିନେଲେ। ତାଙ୍କ ଓଠରୁ ହସ ଲିଭିଗଲା। ବାପା ତା' ଜାଣି ପାରିଲେ ନାହିଁ। ଜେନି ବାପାଙ୍କ ଗବେଷଣାଗାରରେ ତାଙ୍କର ପ୍ରଧାନ ସହାୟିକା ଭାବରେ କାମ କରୁଥିଲା। ବାପାଙ୍କ ସହ ତା'ର ଘନିଷ୍ଠତା କିଭଳି ତାକୁ ଏମିତି ଭାବରେ ନିକଟତର କରିଥିଲା, ତାକୁ ବିବାହ କରିବା ପାଇଁ ମା'ଙ୍କର ଅନୁମତି ନେବାରେ ବାପା ଆଦୌ ଦ୍ୱିଧା ପ୍ରକାଶ କରି ନଥିଲେ।

ସେମାନେ ପରସ୍ପରକୁ ସହଜରେ ପରିତ୍ୟାଗ କରିଥିଲେ। ଏବଂ ମା' ଏକାକୀ ଜୀବନ ବିତାଇଲେ ଚିରଦିନ ପାଇଁ। ସେ ଅନ୍ୟ କାହାକୁ ଗ୍ରହଣ କରିପାରିଲେ ନାହିଁ। ଅନେକ ସମୟରେ ମା' କୁହନ୍ତି, ତୋର ବାପା ଜଣେ ଅନନ୍ୟ ବ୍ୟକ୍ତିତ୍ୱ! ତାଙ୍କୁ ଅନ୍ୟ କାହାସହ ତୁଳନା କରି ହେବନାହିଁ।

ମୁଁ ଜାଣିପାରେ ନାହିଁ ଅସୁବିଧା କେଉଁଠି ? ଏଭଳି ଏକନିଷ୍ଠ ପତ୍ନୀକୁ ଛାଡ଼ି ଜେନିକୁ କାହିଁକି ଗ୍ରହଣ କଲେ ବାପା ?

ଏସବୁ ପ୍ରହେଳିକା ସୃଷ୍ଟି କରିଛି ମୋ ମନରେ। ମାର୍ଥାକୁ ମୁଁ କିଛି କହିପାରୁନାହିଁ। ବିବାହର ନିଷ୍ପତ୍ତି ନେବା ଖୁବ୍ କଷ୍ଟକର।''

ଦୀର୍ଘ ସମୟ ଧରି ଏକପାଖିଆ ଭାବରେ ତାକୁ ଅସ୍ଥିର କରୁଥିବା ସମସ୍ୟାମାନଙ୍କ ସଂପର୍କରେ ବେଶ୍ ମନ ଖୋଲି କଥାବାର୍ତ୍ତା କରୁଥିଲା ଫ୍ରେଡ୍‌ରିକ। ଏବେ ସମ୍ଭବତଃ ଅନ୍ୟ କିଛି କହିବାରେ ବାକି ରହିଯାଇଛି। ହଠାତ୍ ବ୍ୟସ୍ତ ଭାବରେ ସେ ପଚାରିଲା, ''ହ୍ୱାଟ୍ ଏବାଉଟ୍ ଇଣ୍ଡିଆନ୍ ୱାଇଭ୍‌ସ୍ ? ଆର୍ ଦେ ଟ୍ରୁଥ୍‌ଫୁଲ୍ ଟୁ ଦେୟାର ହସ୍‌ବ୍ୟାଣ୍ଡସ୍ ?''

''ଓଃ ସିଓର୍! ମ୍ୟାରେଜ୍ ଇଜ୍ ଏ ସାକ୍ରେଡ୍ ଥିଙ୍ଗ୍ ଟୁ ଦେମ୍। ଏହା ସ୍ୱର୍ଗରେ ସ୍ଥିରୀକୃତ ହୁଏ। ଲଭ୍, ୟୁ ନୋ, ଦୁଇଟି ଜୀବନର ସେତୁ ଭଳି କାର୍ଯ୍ୟ କରେ।''

''ଆଇ ଡୋଣ୍ଟ୍ ବିଲିଭ୍ ଅଲ୍ ଦିଜ୍ ଥିଙ୍ଗ୍‌ସ।''

''ଫ୍ରେଡ୍‌ରିକ୍, ପୃଥିବୀର ସବୁ ସ୍ଥାନରେ ନାରୀ, ପୁରୁଷ ଏକାଭଳି। ସେମାନଙ୍କ ପାଖରେ ଥାଏ ପରସ୍ପରକୁ ସମ୍ମୋହନ କରିବାର ଶକ୍ତି, ତେଣୁ ବିବାହିତ ନାରୀଟି ଯେ ଅନ୍ୟ ପୁରୁଷ ପ୍ରତି ଆସକ୍ତ ନହେବ ତା' ଆଦୌ ଅସମ୍ଭବ ନୁହଁ। କିନ୍ତୁ

ଭାରତର ମହାନ୍ ସଂସ୍କୃତି ଯାହାକି ବେଦବେଦାନ୍ତ, ଉପନିଷଦର ବାର୍ତ୍ତାବହ, ତାହା ମଣିଷକୁ ନ୍ୟାୟ ଅନ୍ୟାୟର ମାର୍ଗ ଦେଖାଏ।

ସେ କହେ, ବିବାହ ଦ୍ୱାରା ଦୁଇଟି ଆତ୍ମାର ମିଳନ ହୁଏ। ଏଇ ବିଶ୍ୱାସ ଦ୍ୱାରା ପରିଚାଳିତ ପ୍ରତ୍ୟେକ ଭାରତୀୟ ଏବଂ ଏଇଥିପାଇଁ ଅନ୍ୟାନ୍ୟ ଦେଶ ତୁଳନାରେ ଭାରତରେ ବିବାହ-ବିଚ୍ଛେଦ ଖୁବ୍ କମ୍ ଦେଖାଯାଏ।''

''ସୋ ଥାଇ ଲାଇକ୍ ଇଓର୍ କଣ୍ଟ୍ରି!'' ହସି ହସି କାଂଧ ନଚେଇ କହିଲା ଫ୍ରେଡ୍‌ରିକ୍।

ଏବେ ମାର୍ଥା ବିଷୟରେ ଖୁବ୍ ଗପୁଥିଲା ସେ। ମାର୍ଥାକୁ ସେ ଭଲ ପାଏ। ଅଥଚ ବିବାହ ତାକୁ ଭୟ ଦେଖାଏ। ମା'ର ଉଦାସ ମୁହଁର ଛବି ସେଇ ପିଲାଦିନରୁ ଭୁଲି ପାରି ନାହିଁ ଫ୍ରେଡ୍‌ରିକ୍।

''ଇଟ୍ ନିଡ୍‌ସ ଷ୍ଟ୍ରଙ୍ଗ୍ ୱଇଲ୍ ପାୱାର୍। ନିଜ ଉପରେ ନିଜର ନିୟନ୍ତ୍ରଣ! ଗଭୀର ଆତ୍ମ-ବିଶ୍ୱାସ!'' ସାଂଧନା ଶେଷରେ ଏତିକି ମାତ୍ର କହିଥିଲା।

ଫ୍ରେଡ୍‌ରିକ୍ ବାରମ୍ବାର ଉଚ୍ଚାରଣ କରୁଥିଲା, ''ଦ୍ୟାଟ୍‌ସ ରାଇଟ୍, ଦ୍ୟାଟସ୍ ରାଇଟ୍।''

ଲୁଫ୍‌ଥାନ୍‌ସା ଏବେ ପଶ୍ଚିମ ଇଉରୋପର ଦେଶମାନଙ୍କ ଉପର ଦେଇ ଉଡ଼ି ଯାଉଛି। ଫ୍ରାଙ୍କ୍‌ଫର୍ଟ୍‌ରେ ଓହ୍ଲାଇବା ସମୟ ଆସନ୍ନ। ସାଧନା ପିଲାମାନଙ୍କୁ ଦେଖିବାକୁ ଅସ୍ଥିର ହୋଇ ଉଠିଥିଲା।

ଫ୍ରେଡ୍‌ରିକ୍ ମାର୍ଥାକୁ ଏୟାରପୋର୍ଟରେ ଦେଖିବ ଏବଂ ଏଇଥର ତା'ର ବିବାହର ନିଷ୍ପତ୍ତି ନେବା ବିଷୟ ଜଣାଇ ଆଶ୍ଚର୍ଯ୍ୟ କରିଦେବ— ଏମିତି କିଛି ଖୁସି ତାକୁ ଆଚ୍ଛନ୍ନ କରିଥିଲା।

ସେମାନଙ୍କର- ଆଶା ଓ ବିଶ୍ୱାସକୁ ତ୍ୱରାନ୍ୱିତ କରି ଲୁଫ୍‌ଥାନ୍‌ସା ଫ୍ରାଙ୍କଫର୍ଟ୍‌ର ମାଟି ଛୁଇଁଲା।

□ □

## ଲେଖିକାଙ୍କର ଅନ୍ୟାନ୍ୟ ପୁସ୍ତକ

ଗଳ୍ପ ସଂକଳନ : ସୂର୍ଯ୍ୟ ଶିଖା
ଅନ୍ଧକାରର ରଙ୍ଗ
ଅନେକ ଦିନ ପରେ
ନିଶୀଥ ସୂର୍ଯ୍ୟ

ଉପନ୍ୟାସ : ସୀମାହୀନ
ମଂଜୁଲାର ଝିଅ
(ପ୍ରକାଶୋନ୍ମୁଖୀ)
ତମସା
(ପ୍ରକାଶୋନ୍ମୁଖୀ)

ଶିଶୁ ସାହିତ୍ୟ : ଅମାନିଆ ପିଲାଙ୍କ ମଉଜ
ତିନିମୋଟା ଲୋକଙ୍କ କାହାଣୀ
(ପ୍ରକାଶୋନ୍ମୁଖୀ)

ଭ୍ରମଣକାହାଣୀ : ଆଣ୍ଡାମାନ୍‌ଯାତ୍ରୀର ଡ଼ାଏରୀରୁ
(ପ୍ରକାଶୋନ୍ମୁଖୀ)



## ଶକୁନ୍ତଳା ପଣ୍ଡା

ଗଳ୍ପ, ଉପନ୍ୟାସ ଲେଖିକା। ଏହା ବ୍ୟତୀତ ପ୍ରବନ୍ଧ, ଆକାଶବାଣୀର ନାଟକ, ଶିଶୁ ସାହିତ୍ୟ ମଧ୍ୟ ରଚନା କରିଛନ୍ତି।

ତାଙ୍କର ପ୍ରକାଶିତ ଗଳ୍ପ ପୁସ୍ତକ 'ସୂର୍ଯ୍ୟଶିଖା', 'ଅଂଧକାରର ରଂଗ', 'ଅନେକଦିନ ପରେ', 'ନିଶୀଥ ସୂର୍ଯ୍ୟ' ଓ 'ଜେରୁଜେଲମ୍‌ର ସନ୍ଥ' ଏବଂ ଉପନ୍ୟାସ 'ସୀମାହୀନ' ପ୍ରକାଶିତ। ଅନ୍ୟ ଦୁଇଟି ଉପନ୍ୟାସ, ଗୋଟିଏ ଗଳ୍ପ-ସଂକଳନ ଏବଂ ଏକ ଭ୍ରମଣକାହାଣୀ ପ୍ରକାଶୋନ୍ମୁଖୀ।

କେତେକ ଗଳ୍ପ ହିନ୍ଦୀ, ଇଂରାଜୀର ବିଭିନ୍ନ ପତ୍ରପତ୍ରିକାରେ ଅନୂଦିତ ହୋଇ ପ୍ରକାଶ ପାଇଛି।

ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକ ଶିକ୍ଷା ପ୍ରାପ୍ତ। ତାଙ୍କ ସଂପାଦନାରେ ୧୯୭୫ ମସିହାରୁ ମାସିକ ପାରିବାରିକ ପତ୍ରିକା 'ସୁଚରିତା' ନିୟମିତ ପ୍ରକାଶ ପାଇଆସୁଅଛି।